




# ଭକ୍ତି ସୁମନ

କନକଲତା ପଟନାୟକ




## ନବକଳେବର

# ଭକ୍ତି ସୁମନ



କବୟିତ୍ରୀ
ପ୍ରଫେସର ଡ଼ାକ୍ତର କନକଲତା ପଟନାୟକ

# ଭକ୍ତି ସୁମନ
(କବିତା ସଂକଳନ)

*ଲେଖିକା*
**ଡ଼.ଶ୍ରୀମତୀ କନକଲତା ପଟ୍ଟନାୟକ**
ଫୋନ : ୯୩୩୮୦୧୬୦୨୬
ଇ-ମେଲ :drkpatnaik@rediffmail.com

*ପ୍ରକାଶକ*
**ଡ଼. ପ୍ରମୋଦ କୁମାର ପଟ୍ଟନାୟକ**
୪୭୧୧, ତାରାମଣି ଭବନ, ଲକ୍ଷ୍ମୀ ବିହାର,
ଭୁବନେଶ୍ୱର-୭୫୧୦୦୫
ଫୋନ : ୯୩୩୭୧୧୨୧୭୯

*ପ୍ରକାଶନ*
ନେତ୍ର ଉତ୍ସବ-୧୬.୭.୨୦୧୫

*ଅକ୍ଷର ବିନ୍ୟାସ ଓ ମୁଦ୍ରଣ*
**ଶ୍ରୀନନ୍ଦନ ପ୍ରିଣ୍ଟର୍ସ**
ୟୁନିଟ-୪, ଭୁବନେଶ୍ୱର



*ମୂଲ୍ୟ*
**ଟ.୩୦/-(ତିରିଶ ଟଙ୍କା ମାତ୍ର)**

*(ଏହି ପୁସ୍ତକର ବିକ୍ରୟଲବ୍ଧ
ସମସ୍ତ ଅର୍ଥ ଶ୍ରୀଜଗନ୍ନାଥଙ୍କ ହୁଣ୍ଡିରେ
ସମର୍ପଣ କରାଯିବ)*

**Bhakti Suman**
(Collection of Poems)

Writer
**Dr. Smt. Kanaklata Patnaik**
Phone : 9338016026
E-mail : drkpatnaik@rediffmail.com

Publisher
**Dr. Pramod Kumar Pattnaik**
4711, Taranmani Bhawan,
Laxmi Vihar, Bhubaneswar
Phone : 9337112179

Edition
Netra Utsav-16.07.2015

DTP & Printing
**Srinandan Printers**
Unit-4, Bhubaneswar



Price
**Rs.30/- (Rupees Thirty only**

*(All money collected from this book
will be donated to Lord Jagannath Hundi)*



## ଗୀତ ଗୋବିନ୍ଦ

ଚନ୍ଦନଚର୍ଚ୍ଚିତ ନୀଳ କଳେବର ପୀତବସନବନମାଳୀ ।
କେଳିଚଳନ୍ମଣି କୁଣ୍ଡଳମଣ୍ଡିତ ଗଣ୍ଡଯୁଗସ୍ମିତଶାଳୀ ॥

# ମୁଖବନ୍ଧ

ହେ ବ୍ରହ୍ମଦାରୁ ! ମୁଁ ଜଣେ ମୂର୍ଖାତି ମୂର୍ଖ ମହିଳା । ତୁମ ବିଷୟରେ କିଛି ଲେଖିବାକୁ ଦୁଃସାହାସ କରିଥିବାରୁ କ୍ଷମାପାର୍ଥିନୀ । ମୁଖବନ୍ଧ ଲେଖିବାର ଜରୁରୀ ଦୃଷ୍ଟିରୁ, ଦୁଇପଦ ସାହାସ କରି ଲେଖୁଛି ଏବଂ ଶ୍ରୀପୟରେ ଶରଣ ମାଗୁଛି ।

ମହାପ୍ରଭୁ ! ତୁମ ବିଷୟରେ ମୁଁ କ'ଣ ବା ଲେଖିବି । ତୁମେ ତ ସାକାର ଓ ନିରାକାର । ତୁମର ତ ଆଦି ଅନ୍ତ ନାହିଁ । ତୁମେ ସଜୀବ ଓ ନିର୍ଜୀବ । ତୁମେ ତ ସଗୁଣ ଆଉ ନିର୍ଗୁଣ । ରାମ ଚରିତ ମାନସ କହେ "ନେତି ନେତି କହି ବେଦ ପୁକାରେ" । ବିଭିନ୍ନ ଶ୍ରୁତି ଅନୁସାରେ-

"ସର୍ବ ରହସ୍ୟ ପୁରୁଷୋତ୍ତମସ୍ୟ ଦେବାଃ ନଜାନନ୍ତି କୃତଃମନୁଷ୍ୟଃ"

କୁଳରୀତି : ପ୍ରତି କୁଳର ଅଲଗା ଅଲଗା କୁଳରୀତି ଥାଏ । କୁଳର ପ୍ରତି ମନୁଷ୍ୟ ତାହା ମାନି ଚଲୁଥାନ୍ତି । "ରଘୁକୁଳ ରୀତି ସଦା ଚଲିଆଇ - ପ୍ରାନ ଯାହୁଁ ବରୁ ବଚନୁ ନଯାଇ" । ମୋ ପିତୃକୁଳର କୁଳରୀତି ବିଷୟରେ ପଦେ ଲେଖୁଛି । ପ୍ରାୟ ୧୦୦ବର୍ଷ ତଳର କଥା । ଚାରିବର୍ଷର ପୁଅ (୰ଯଦୁମଣି ପଟ୍ଟନାୟକ-ମୋର ମଝିଆଁ ଦାଦା)ଙ୍କୁ ଗ୍ରାମ-ତାଳଡିହ, ଜିଲ୍ଲା-ଖୋର୍ଦ୍ଧା (ମୋ ଗାଁ)ର ଗ୍ରାମ ଦେବତା ପ୍ରଭୁ ମହାବୀର ପ୍ରସନ୍ନ ହୋଇ, ତାଙ୍କୁ ହୁକୁମ୍(ରୋଗ ଭଲ କରିବା ଶକ୍ତି) ଦେବା ପାଇଁ ସକ୍ଷମ କରାନ୍ତି । ଅନେକ ମାରାତ୍ମକ ରୋଗରୁ ରୋଗୀମାନେ ମୁକ୍ତ ହେଉଥିଲେ । ଏପରିକି ପାରିକୁଦ ରାଜାଆଦି ବହୁ ବଡ଼ ଲୋକ ରୋଗରୁ ଉପଶମ ପାଇ ଏହାର ବହୁଳ ପ୍ରଚ୍ଚର କରାଇଥିଲେ । ଶେଷରେ ମହାମାରି ବ୍ୟାପିଲା ଏବଂ ମୋ ଗୋସେଇଁ ମା ପୁଅ ବାବାଜୀ ହୋଇଯିବା ଭୟରେ ତାଙ୍କୁ ଆମିଷ ଖୁଆଇ ଏହାକୁ ବନ୍ଦ କରାଇଥିଲେ । ଏହାପରେ ଜଣେ ସାଧୁ କହିଥିଲେ ଯେ- ଏହା ହନୁମାନଙ୍କ ଲୀଳା ଥିବାରୁ ପ୍ରତିବର୍ଷ ଏଠାରେ ରାମଲୀଳା ହେବ । ସାଧୁଙ୍କ କଥା ରକ୍ଷାକରି ଏ ପର୍ଯ୍ୟନ୍ତ ମଧ ରାମଲୀଳା ଚ୍ଚଲୁ ରହିଛି । ଥରେ ବନ୍ଦ ହେବାର ନିଷ୍ପତି ହୋଇଥିବାରୁ, ଗୋଟେଦିନ ରାତିଅଧରେ ଅନେକ ଘର ପୋଡି ଯାଇଥିଲା । ଏଣୁ ଏଯାବତ୍ ଆଉ କେବେ ବନ୍ଦ ହୋଇନାହିଁ ।

ମୁଁ ମୋର ହେତୁ ପାଇଲା ଦିନୁ, ଏହି କୁଳରୀତିକୁ ପାଥେୟ କରି ନିଜକୁ ଭଗବତ୍ ସତ୍ତାରେ ହଜାଇ ଦେବାକୁ ଚ୍ଚହିଁଥିଲି । କିନ୍ତୁ ବିଧିର ବିଧାନ ଅନ୍ୟ ଥିଲା । ଡ଼ାକ୍ତରୀ ବିଦ୍ୟା ସହ ଯୋଗ ଓ ଆଧାତ୍ମିକୁ ଜୀବନର ବୃତ୍ତି ଓ ପ୍ରବୃତ୍ତି ରୂପେ ବାଛି ନେଇଛି । ପରିଣତ ବୟସରେ ପୁରୀରେ ଥିବା ସ୍ୱଗୃହରେ ରହିପାରିଲିନି । ଧନ୍ୟ ତୁ ! ଗୃହ ଜଞ୍ଜାଳ ତୋତେ ତୁ ବଡ଼, ଈଶ୍ୱର ପ୍ରଣିଧାନ ଗୌଣ । ଏଣୁ ମୋର ବନ୍ଧୁ, ଯେଉଁମାନେ ପୁରୀରେ ବାସ କରୁଛନ୍ତି, ସେମାନଙ୍କର ପ୍ରଭୁଭକ୍ତି ପାଇଁ ମୁଁ ସେମାନଙ୍କୁ ସାଧୁବାଦ ଜଣାଉଛି ।



ଏହି କ୍ଷୁଦ୍ର ପୁସ୍ତକ "ନବକଳେବର ଭକ୍ତି ସୁମନ" ଉତ୍ପତ୍ତି ଉପରେ ଦୁଇପଦ କହୁଛି, ନଚେତ୍ ଋଣ ବୋହିବାକୁ ପଡ଼ିବ ବାକି ଜୀବନ । ମୋର ଜଗନ୍ନାଥ ସଂସ୍କୃତିରେ ରଚି ଥିବାରୁ ଅବସର ପରେ ମୋର ସ୍ୱାମୀ ଡ଼ା: ପ୍ରମୋଦ କୁମାର ପଟ୍ଟନାୟକ, ବଡଝିଅ ଟୁଇଁକଲ ଓ ସାନଝିଅ ନବନୀତା ଏବଂ ଦୁଇ ଜାମାତା କହନ୍ତି - ତୁମେ ଜଗନ୍ନାଥ ସଂସ୍କୃତି ଉପରେ ବହିଲେଖ ଏବଂ ଇଂରାଜୀରେ କିଛି ବହିର ଅନୁବାଦ କର, ଛପାଇବା ଆଦି କାମ ଆମର । ମୁଁ ଶୁଣୁଥାଏ ଏବଂ ହଁ କରୁଥାଏ । ଦିନେ ହଠାତ୍ ଗୋଟିଏ ଭୋଜିରେ କଥାବାର୍ତ୍ତା ହେଲାବେଳେ, ଜଣେ ଭଦ୍ରବ୍ୟକ୍ତି ମୋତେ କହିଲେ-"ଆପଣ ଗୋଟିଏ ଗୀତ ଲେଖା ଦିଅନ୍ତୁ, ତାହା ଆମ ବହି 'ବନ୍ଧୁ'ରେ ଛପାଯିବ" । ମୁଁ ହଁ କରି "ନବକଳେବର ନିମନ୍ତ୍ରଣ" ବୋଲି କବିତା ଲେଖି ଭଦ୍ରବ୍ୟକ୍ତିଙ୍କୁ ଦେଲି । ସେ ପଢିସାରି କହିଲେ- କବିତାଟି ବେଶ ଭାବପୂର୍ଣ୍ଣ ଅଛି, କିନ୍ତୁ ପଦ ପଡୁନାହିଁ । ଏଣୁ ତାଙ୍କୁ ଦ୍ୱିତୀୟ ଥର ଲେଖି ଦେଲି । ତାପରେ ସେ ମୋତେ କହିଲେ- ୨୫ଟି ଗୀତ ଦେବେ, ନବକଳେବର ପୂର୍ବରୁ ଗୋଟିଏ ଛୋଟିଆ ବହି ଆପଣଙ୍କ ନାଁରେ ଛପାଯିବ । ଏହା ଶୁଣି ମୋର ଆନନ୍ଦ ଓ ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ମୁଁ ପଚାରିଲି- ମୋତେ ଜ୍ଞାନ କେଉଁଠାରୁ ମିଳିବ ? ସେ ମହାଶୟ ମୋତେ ହରେକୃଷ୍ଣ ମହତାବ ରାଜ୍ୟ ଗ୍ରନ୍ଥାଗାର ଯାଇ ପଢାପଢି କରିବାକୁ ପରାମର୍ଶ ଦେଲେ । ୨୫ଟି ଗୀତରେ ବହିଟି ହେବ, ପୁଣି ଏତେ କମ୍ ସମୟରେ, ମୋର କିପରି ବିଶ୍ୱାସ ହେଲା ମୁଁ ଜାଣେନି । କିନ୍ତୁ ସେ କହିବା ପରଠାରୁ ରାଜ୍ୟ ଗ୍ରନ୍ଥାଗାରକୁ ପ୍ରତିଦିନ ପ୍ରାୟ ୪ଘଣ୍ଟା ଯାଇ ଆସି ଗୀତ ଲେଖିଲି । ୨୫ ଗୀତ ଏତେ କମ୍ ସମୟରେ ସମ୍ଭବ ନ ହେବାରୁ ୨୦ଟି ଗୀତ ଲେଖିକରି ଏହାକୁ ସମ୍ପୂର୍ଣ୍ଣ କଲି ।

ଏହି ଭଦ୍ରବ୍ୟକ୍ତି ଜଣକ ହେଉଛନ୍ତି, ଶ୍ରୀଜଗନ୍ନାଥଙ୍କ ପରମ ଭକ୍ତ ତଥା 'ଓଡ଼ିଆ ଲେଖକ ଲେଖିକା ପରିଷଦ' ଭୁବନେଶ୍ୱରର ମୁଖ୍ୟ ସଂଯୋଜକ ଶ୍ରୀ ଭୁବନାନନ୍ଦ ତ୍ରିପାଠୀ ମହୋଦୟ ।

ଏହି ବହିଟିର ସଂଶୋଧକ ହେଲେ- ଡ଼ା. ସୁରେନ୍ଦ୍ର ବେହେରା, ସ୍ନାତକୋତ୍ତର (ଓଡ଼ିଆ), ଉତ୍କଳ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର, ପି.ଏଚ୍‌ଡ଼ି (ଓଡ଼ିଆ), ବିଶ୍ୱ ଭାରତୀ, ଶାନ୍ତି ନିକେତନ ଏବଂ ଶ୍ରୀ ସନ୍ତୋଷ କୁମାର ପଣ୍ଡା, ଆସିଷ୍ଟାଣ୍ଟ ପ୍ରଫେସର, ଶ୍ରୀ ଶ୍ରୀ ବିଶ୍ୱବିଦ୍ୟାଳୟ, କଟକ, ଏମ୍.ଫିଲ୍(ଶାସ୍ତ୍ରୀୟ ସଂଗୀତ), ଉତ୍କଳ ବିଶ୍ୱବିଦ୍ୟାଳୟ ।

ମୁଁ ଏକାଧାରାରେ ଚିକିତ୍ସକ, ଯୋଗୀ ଏବଂ ଆଧ୍ୟାତ୍ମବାଦୀ ହୋଇଥିବାରୁ ଏହା ସମ୍ଭବ ହୋଇପାରିଲା । ସବୁ ସେଇ ଲୀଳାମୟଙ୍କ ଇଚ୍ଛା । ମୁଁ ନିମିତ୍ତ ମାତ୍ର । ପାଠକ/ ପାଠିକା ମାନଙ୍କ ମତାମତ ଅପେକ୍ଷାରେ ।

ଅବସରପ୍ରାପ୍ତ ପ୍ରଫେସର, ଅଣୁଜୀବ ବିଜ୍ଞାନ ବିଭାଗ
ଏମ୍.କେ.ସି.ଜି. ମେଡ଼ିକାଲ କଲେଜ
ବ୍ରହ୍ମପୁର,ଗଞ୍ଜାମ, ଓଡ଼ିଶା

ପ୍ରଭୁ ଚରଣାଶ୍ରିତା
କନକଲତା ପଟ୍ଟନାୟକ



# ଅଭିମତ



**ଦିବ୍ୟ ଜୀବନ ସଂଘ**
**ଖଣ୍ଡଗିରି, ଭୁବନେଶ୍ୱର**

ଡ଼ଃ. ଶ୍ରୀମତୀ କନକଲତା ପଟ୍ଟନାୟକଙ୍କ ରଚିତ 'ନବ କଳେବର ଭକ୍ତି ସୁମନ' ପାଠକରି ଭାବବିହ୍ୱଳ ହୋଇଗଲା ଏ ସେବକ । ଭାବପୂର୍ଣ୍ଣ ମୁହୂର୍ତ୍ତରେ ମନର ଗଭୀରତମ ପ୍ରଦେଶରୁ ଉବୁକି ଉଠିଥିବା ଭାବର ଏହା ପରିପ୍ରକାଶ । ପ୍ରଭୁ ଶ୍ରୀଜଗନ୍ନାଥଙ୍କର ବିଭିନ୍ନ ଲୀଳାମାନ ବର୍ଣ୍ଣନାକରି ଡ଼ଃ. ପଟ୍ଟନାୟକ ପ୍ରଭୁଙ୍କ ସହିତ କେତେ ଆତ୍ମୀୟତା ତାଙ୍କର ରହିଛି- ତାହା ବେଶ୍ ହୃଦ୍‌ବୋଧ ହୁଏ । ସରଳ ଭକ୍ତିଭାବାପନ୍ନ ଭକ୍ତ ନିଜର ଶେଷ ଇଚ୍ଛା ପୁରୀ ସମୁଦ୍ର କୂଳରେ ନିଜର ଶେଷକୃତ୍ୟ ସଂପନ୍ନ ହେବାକୁ ।

ମହାବାହୁ ପ୍ରଭୁ ଜଗତନାଥଙ୍କ ଶ୍ରୀଚରଣରେ ପ୍ରାର୍ଥନା, ତାଙ୍କର ମହତ ଇଚ୍ଛା ସେ ପୂରଣ କରନ୍ତୁ । ଏହି ପୁସ୍ତିକା ମାଧ୍ୟମରେ ସେ, ବଡ଼ଠାକୁରଙ୍କ ଜଣେ ମହାନ ଭକ୍ତ ବୋଲି ଲୋକେ ତାଙ୍କର ଭକ୍ତି କବିତା ମାଧ୍ୟମରେ ଜାଣନ୍ତୁ ।

ଜୟ ଜଗନ୍ନାଥ !

ଅକିଂଚନ ସେବକ
**ସ୍ୱାମୀ ଶାନ୍ତାନନ୍ଦ ସରସ୍ୱତୀ**

# ଉତ୍ସର୍ଗ

ମୁଁ ଉତ୍ସର୍ଗ ନ କଲେ ବି ଯେଉଁ ଚରଣ କମଳକୁ ଉତ୍ସର୍ଗିକୃତ ହୋଇ ଆପେ ଚାଲିଯାଏ, ସେହି ଚରଣକୁ ମୋର କୋଟି କୋଟି ପ୍ରଣାମ ।

## ଏବଂ

ଆନ୍ତରିକ ପ୍ରାର୍ଥନା ସହ ମୋର ଦେବୀ ସ୍ୱରୂପିଣୀ ମାତା **୰କୁନ୍ଦନମାଳୀ ପଟ୍ଟନାୟକ**, ଯାହାଙ୍କୁ ମୁଁ ଜ୍ଞାନ ଚକ୍ଷୁରେ ଦର୍ଶନ କରିପାରି ନାହିଁ, କହିଲେ ଛାତିରୁ ଏବେ ମଧ୍ୟ କୋହ ଉଠୁଛି, ତାଙ୍କ ଶ୍ରୀପୟରେ... ଓ ଦେବ ସ୍ୱରୂପ ପିତା **୰ଚିନ୍ତାମଣି ପଟ୍ଟନାୟକ**, ଜଣେ ଶକ୍ତି ସାଧକ, ତାଙ୍କ ଶ୍ରୀପୟରେ... ଏହାକୁ ସମର୍ପଣ କରିଥିବାରୁ ମୁଁ ନିଜକୁ ଧନ୍ୟ ମନେକରୁଛି ଏବଂ ସେମାନଙ୍କର ସ୍ୱର୍ଗୀୟ ଆଶୀର୍ବାଦକୁ ପାଥେୟ କରି ମୋର ଭାବନାକୁ ଲେଖା ମାଧ୍ୟମରେ ପ୍ରକାଶ କରି ଚାଲୁଛି ।

ଜୟ ଜଗନ୍ନାଥ !

ଚରଣ ସେବିକା
କନକ

# ସୂଚୀପତ୍ର

# ନବକଳେବର ନିମନ୍ତ୍ରଣ

ଯାଆରେ ଉଡ଼ି ଉଡ଼ିଯା
ମନ କପୋତ ମୋ ଉଡ଼ି ଯା
ଶ୍ରୀକ୍ଷେତ୍ରୁ ବାହାରି ଦେଶେ ବିଦେଶେ
ସାରା ସଂସାରେ ତୁ ଉଡ଼ିଯା । ୦ ।

ଜଗନ୍ନାଥ ସ୍ୱାମୀ ନୀଳମାଧବ
ପୁଣ୍ଡରିକାକ୍ଷ ସେ କଳାଠାକୁର
ତାଙ୍କ ଗୁଣାବଳୀ ଗାଇଯା
ତାଥେଇ ତାଥେଇ ନାଚିଯା । ୧ ।

ଭାଇ ବଳରାମ ଭଉଣୀ ସୁଭଦ୍ରା
ତାଙ୍କ ମହିମା ବି ଗାଇଯା
ଲକ୍ଷ୍ମୀଙ୍କ ଦୟାରୁ ଶ୍ରୀୟା ଆଦି ଖ୍ୟାତ
ଶ୍ରୀମନ୍ଦିର ପରା ତାଙ୍କ ନାମେ ଜ୍ଞାତ
ପ୍ରଥମ ସେବକ ଦିବ୍ୟସିଂହ ରାଜା
ସେମାନଙ୍କ ଗୁଣ ଗାଇଯା । ୨ ।

ପୁରୀ ମହାତୀର୍ଥ, ସକଳ ବିଶ୍ୱରେ
ଧରି ବ୍ରହ୍ମଦାରୁ ନିଜ ବକ୍ଷ ପରେ
ପହଞ୍ଚାଇ ଦେଲା ବାଙ୍କି ମୁହାଣରେ
ମହତ ସେବାତ ଅମର ହୋଇଲା
ଯୁଗେ ଯୁଗେ ନାମ ରହିଲା
ଏହା ସଭିଙ୍କୁ ବିଦିତ କରିଯା
ମହୋଦଧି ଗୁଣ ଗାଇଯା । ୩ ।

ଇନ୍ଦ୍ରଦ୍ୟୁମ୍ନ ରାଜା ଆତୁରେ ଡାକିଲେ ଦର୍ଶନ ପାଇଁ
ନୀଳମଣି କାନ୍ତି,ମଣିମୟ ମୂର୍ତ୍ତି ବଡ଼ ଗୋସାଇଁ
ଏ ସମୟେ ହେଲା ଆକାଶ ବାଣୀ
"ହେ କୃପାଳୁ ତୁମେ ଚିନ୍ତା କରନାହିଁ
ମୁଁ ହେବି ତୁମର, ନୟନ ପଥର ପଥିକ"
ନାରଦ ମୁନିଙ୍କ ବାକ୍ୟ ଅନୁସାରେ
ଯଜ୍ଞ ଅନୁଷ୍ଠାନ କରିଯା । ୪ ।

ଶେଷରେ ସୁଫଳ ମିଳିଲା
ଅଶ୍ୱମେଧ ଯଜ୍ଞ ସରିଲା
ଦାରୁ ରୂପି ପ୍ରଭୁ ନୀଳମାଧବ ସେ
ପୃଥ୍ୱୀରେ ପ୍ରକଟ ହୁଅନ୍ତି
ଇନ୍ଦ୍ରଦ୍ୟୁମ୍ନ ରାଜା ବିଶ୍ୱକର୍ମା ଡାକି
ଗଢ଼ିଲେ ଚତୁର୍ଦ୍ଧା ମୂରତି
ଏ ଶବଦଟି ଯଦି କାନେ ପକାଇବୁ
ତୋତେ ମିଳିବେ ଜଗତ ରାଜା
ତାଙ୍କ ଗୁଣ ରାଜି ଗାଇଯା । ୫ ।

ବାରରୁ ଉଣିଶ ବରଷ ମଧରେ
ଯୋଡ଼ା ଆଷାଢ଼ଟି ପଡ଼ିବ
ପୁରୁଣାକୁ ଛାଡ଼ି ଚତୁର୍ଦ୍ଧାମୂର୍ତ୍ତିଙ୍କ
ନବ କଳେବର ହୋଇବ
ଆସିଛି ମସିହା ଦୁଇହଜାର ପନ୍ଦର
ଯୋଡ଼ା ଆଷାଢ଼ ପଡ଼ିବାର
ନବ କଳେବର ଅନୁଷ୍ଠାନ ଏଣୁ
ବିଧିମତେ ହେବ ଏଥର
ମହା ପ୍ରଭୁଙ୍କର ନବ କଳେବର
ତାଙ୍କର ମହିମା ଗାଇଯା । ୬ ।

ଶୁଣି କୋଇଲି ବୈକୁଣ୍ଠ ଶବଦ
ଭକ୍ତଙ୍କ ଛାତିରେ ଛୁରି ଚାଲିଯାଏ
ସଭିଏ ହୁଅନ୍ତି ସ୍ତବ୍ଦ
ଜୀର୍ଣ୍ଣ ଚତୁର୍ଦ୍ଧା ମୂର୍ତ୍ତିଙ୍କ ସମାଧି
ଦାରୁ ବ୍ରହ୍ମରେ ପୁନର୍ଜନ୍ମ ସେଇଠି
କଳା କାହ୍ନୁ ପରା ସ୍ଥିତ ପ୍ରଜ୍ଞ ବ୍ରହ୍ମ
କାଟୁଛନ୍ତି ଦିନ ସାଥେ ନେଇ ଲକ୍ଷ୍ମୀ ଭାରିଜା
ଆସିବ ଗୁଣ୍ଡିଚା ଯାତରା
ନନ୍ଦି ଘୋଷ ରଥେ ବିଜେ ହେବେ ପ୍ରଭୁ
ନବ କଳେବର ନବୀନ ଉନ୍ମାଦ
ତାଳେ ତାଳେ ଥରେ ନାଚିଯା । ୭ ।

ଭାଇ ବଳରାମ ତାଳଧ୍ୱଜ ରଥେ
ଦେବ ଦଳନରେ କାମ୍ପିଲ୍ୟ ବାସିନୀ
ଦେବା ହରିବୋଲ ହୁଳହୁଳି ଧ୍ୱନି
ଭକ୍ତଙ୍କ ସଙ୍ଗରେ ନାଚିଯା
ଗୀତା ବାଣୀ ପରା ସତ୍ୟ ହୋଇବ
"ବାସାଂସି ଜୀର୍ଣାନି ଯଥା ବିହାୟ
ନବାନି ଗୃହଣାତି ନରୋପରାଣି
ତଥା ଶରୀରାଣି ବିହାୟ ଜୀର୍ଣା
ନ୍ୟନାନି ସଂୟାତି ନବାନି ଦେହୀ"
ଏ ମହାମନ୍ତ୍ର ତୁ ବୋଲିଯା । ୮ ।

ମନ କପୋତ ତୁ ଉଡ଼ାଣ ସାରିବୁ
ଶେଷ ଅନୁରୋଧ ଦେଇ
ଦିବ୍ୟସିଂହ ଦେବ ରାଣ ଦେଇଛନ୍ତି
ଲକ୍ଷ ଜନତାଙ୍କୁ ଆହ୍ୱାନ କରନ୍ତି
ତାଙ୍କର ଦାୟୀତ୍ୱ ଲାଘବ କରିବା ପାଇଁ
ରାଜା ନୁହଁ ସେତ ବଡ଼ ଠାକୁରଙ୍କ ପରଜା
ଭଗତ ଭାଇରେ, ଗୁଣ ତୁ ତାଙ୍କର ଗାଇଯା । ୯ ।



# ପାତାଳି ଜଗନ୍ନାଥ

ଭକ୍ତ ପାଇଁ ତୁମେ ଅନନ୍ୟ ।
ଲୀଳା ତୁମ ଅତି ମହାନ୍ ॥ (୧)

ଶୁଣାନାହିଁ କେଉଁ ଠାକୁର ।
ଶତ୍ରୁ ଭୟେ ପାତାଳ ପୁର ॥ (୨)

ମନ୍ଦିର ଛାଡ଼ି ରଥାରୂଢ଼ ॥
ଦେଖେ ତୁମକୁ ଜ୍ଞାନୀ, ମୂଢ଼ ॥ (୩)

ଶାସ୍ତ୍ରେ ଯେ ଅଛି ମହାବାଣୀ ।
ରଥେ ଦେଖି ହୁଏ ପୂଣ୍ୟ ଜାଣି ॥ (୪)

ତୁମେ ସାକାର, ନିରାକାର ।
ତୁମ ବିନା ଭକ୍ତ ଆକୁଳ ॥ (୫)

ମାଦଳା ପାଞ୍ଜୀର ସୂଚନା ।
ବହୁଥର ଶତ୍ରୁ ଯାତନା ॥ (୬)

ଏକି କଲ ପ୍ରଭୁ ଆକୁଳେ ।
ଶତ୍ରୁ ଭୟେ ପଶ ପାତାଳେ ॥ (୭)

ଅଠର ଶହ ବୟାଅଶୀ ।
ରକ୍ତ ବାହୁ କ୍ରୋଧରେ ଆସି ॥ (୮)

ମହାରଜାଙ୍କୁ ସ୍ୱପ୍ନାଦେଶ ।
ସୁବର୍ଣ୍ଣ ପୁରେ ଗୁପ୍ତ ବାସ ॥ (୯)

ଚିଲିକାରେ ନାବେ ବସାଇ ।
କେତେ ଅରଣ୍ୟରେ ବୁଲାଇ ॥ (୧୦)

ଗୋପାଳି ଗ୍ରାମରେ ପାତାଳି ।
ଚିହ୍ନ ଦେଲେ ଗଛ ଲଗାଇ ॥ (୧୧)

ଗଛ ବଢ଼ିଲା ଧୀରେ ଧୀରେ ।
ଧୂପ ଦୀପ ପ୍ରତି ସନ୍ଧ୍ୟାରେ ॥ (୧୨)

ଭକ୍ତ କାନ୍ଦେ ଶୁଣାଇ ବାଣୀ ।
ନ ଫେରିଲ ମଥୁରାରୁ ପୁଣି ॥ (୧୩)



ଭକ୍ତ ବାଣୀ ହୋଇଲା ସତ ।
ବହୁ ବର୍ଷ ପରେ ଫେରତ ॥ (୧୪)

ଯାଜପୁର ରାଜା ଯଯାତି ।
ପାତାଳୁ ଉଦ୍ଧାର କରନ୍ତି ॥ (୧୫)

ଶ୍ରୀକ୍ଷେତ୍ରେ ମନ୍ଦିର ଗଢ଼ିଲେ ।
ନବ କଳେବର କରିଲେ ॥ (୧୬)

ଦ୍ୱିତୀୟ ଇନ୍ଦ୍ରଦ୍ୟୁମ୍ନ ହେଲେ ।
ଯୁଗେ ଯୁଗେ ନାମ ରଖିଲେ ॥ (୧୭)

କନକର ଦୁଃଖ ଗୁହାରି ।
ଘେନା କର ପ୍ରଭୁ ଶ୍ରୀହରି ॥ (୧୮)





# ବାଈଶି ପାହାଚ

ମୁଁ ବାଈଶି ପାହାଚ, ମୁଁ ବାଈଶି ପାହାଚ
ଯାହା କଥା ବଖାଣିବି ସବୁ ସତ ସତ । ୧ ।
ମୋ ବକ୍ଷେ କେହି ନ କରି ପଦାଘାତ
ହୋଇ ପାରିନି ଜଗାର ପରମ ଭକତ । ୨ ।
ଅଭଗତ ମୋ ବକ୍ଷରେ ହୋଇ ହାଉଯାଉ
ହୋଇଛନ୍ତି ପ୍ରଭୁଙ୍କର ପରମ ଶ୍ରଦ୍ଧାଳୁ । ୩ ।
ପଥର ହୋଇବି ସବୁ ଭକତଙ୍କ ବନ୍ଧୁ
ବକ୍ଷରେ ଠିଆହୋଇ ଦେଖନ୍ତି କୃପାସିନ୍ଧୁ । ୪ ।
ବରଷକେ ଥରେ ପ୍ରଭୁ କାଳିଆ ସାଆନ୍ତ
ଦାରୁବ୍ରହ୍ମ, ମହାମେରୁ, ଅଚଳ, ଅନନ୍ତ । ୫ ।
ମୋ ଉପରେ ପଦଦେଇ ପହଣ୍ଡି କରନ୍ତି
ଭାଇ ଭଉଣୀ ରଥରେ ଯାତ୍ରା କରିଥାନ୍ତି । ୬ ।
ରଥରେ ରଥରେ ପ୍ରଭୁ ଗୁଣ୍ଡିଚା ଯାଆନ୍ତି
ତାଙ୍କୁ ଦେଖିବାରେ ଭକ୍ତ ବିକଳ ହୁଅନ୍ତି । ୭ ।
ଏ ବିଚ୍ଛେଦ ମୋ ମନରେ ଆଣଇ ଆଘାତ
ନବ ଦିନ ନବ ଯୁଗ ପରି ହୁଏ ଜ୍ଞାତ । ୮ ।
ତାଙ୍କ ଅପେକ୍ଷାରେ ମନ ହୁଏ କାନ୍ଦ କାନ୍ଦ
ଶ୍ରୀ ମନ୍ଦିରେ ବିଜେ କଲେ ଫେରଇ ଆନନ୍ଦ । ୯ ।
ତ୍ରେତୟା ଯୁଗରେ ପ୍ରଭୁ ରାମ ଅବତାରେ
ପଥରରୁ ଅହଲ୍ୟାକୁ ତାରିଲେ ପଥରେ । ୧୦ ।
ବାଈଶି ପାହାଚ ମୁହିଁ ମୋ ଦେହ ପଥର
ମୋ ଜୀବନ ଧନ୍ୟ ଏହା ପ୍ରଭୁଙ୍କର ଘର । ୧୧ ।
ଭବିଷ୍ୟତେ ଯଦି ମୀନ ମୋ ବକ୍ଷେ ଖେଳିବ
କଳିଯୁଗ ସମ୍ଭବତଃ ସମ୍ପୂର୍ଣ୍ଣ ହୋଇବ । ୧୨ ।
ଅଚ୍ୟୁତ ମାଳିକା ବହି କହେ ଏହି ବାଣୀ
ରକ୍ଷା କର ସଂସାରକୁ ପ୍ରଭୁ ଚକ୍ରପାଣି । ୧୩ ।






# ଶ୍ରେଷ୍ଠ ଭକ୍ତ ଦାସିଆ ବାଉରୀ

ପିତା ଧନି ଦାସ ମାତା କାଉଳି
ଭକ୍ତ ଶ୍ରେଷ୍ଠ ସେ ଦାସିଆ ବାଉରୀ । ୧ ।

ଜନ୍ମ ପୁରୀଜିଲ୍ଲା ତେଇଶି ପୁର
ମଉଜା ବାଲିଗାଁ ନାମଟି ତାର । ୨ ।

କାର୍ତ୍ତିକ ଏକାଦଶୀରେ ଜନମ
ମାଘ ଏକାଦଶୀରେ ତିରୋଧାନ । ୩ ।

ବାଲ୍ୟ କାଳରୁ ପିତାମାତା ହୀନ
ନିଜେ ମଧ ଥିଲେ ସନ୍ତାନ ଶୂନ୍ୟ । ୪ ।

ଏପରିସ୍ଥିତିରେ ଭାଙ୍ଗି ନ ପଡ଼ି
ନିଷ୍ଠାରେ ପ୍ରଭୁଙ୍କୁ ସଦା ଡାକଇ । ୫ ।

ତୁଳସୀ ଦୁଇ ପତ୍ରରୁ ବାସଇ
ଅଳ୍ପ ଅଳ୍ପ ବିଦ୍ୟା କିଛି ଜାଣଇ । ୬ ।

ଜଗନ୍ନାଥ ଗୀତ ସବୁ ଶୁଣନ୍ତି
ନିଜେ କିଛି କିଛି ଲେଖି ପକାନ୍ତି । ୭ ।

ଜଗତ ଲୀଳାକୁ ବୁଝି ପାରନ୍ତି
ରଥ ଦେଖିବା ପାଇଁ ବାହାରନ୍ତି । ୮ ।

ମୁରବୀ କହନ୍ତି ନୂଆ ପିନ୍ଧିବ
ରଥେ କାଳିଆକୁ ଯେବେ ଦେଖିବ । ୯ ।

ସାଙ୍ଗ ହୋଇ ଦୁହେଁ ଯାତ୍ରା ସେ କଲେ
ଆବେଗରେ ପ୍ରଭୁ ମନ ଜିଣିଲେ । ୧୦ ।

ସାଥେ ପୁଣି ଏକ ନଡ଼ିଆ ନେଇ
ପଞ୍ଚାନନ ଗୋସାଇଁକୁ ତା' ଦେଇ । ୧୧ ।

ଗରୁଡ଼ ସ୍ତମ୍ଭର ପଛରେ ରହି
ସମର୍ପିବ ତାଙ୍କୁ ମୋହର କହି । ୧୨ ।

ତର୍କ ଗୋସାଇଁ ବି ତାହା କରିଲେ
ଆଶ୍ଚର୍ଯ୍ୟରେ ସ୍ତମ୍ଭୀଭୂତ ହୋଇଲେ । ୧୩ ।

ହାତଟିଏ କାହିଁ ଚାଲି ଆସିଲା
ନଡ଼ିଆକୁ ନେଇ ସମର୍ପି ଦେଲା । ୧୪ ।
ଦେଖୁଥିଲେ ପୂଜା ପଣ୍ଡା ଭକତ
ଧନ୍ୟ ଦାସିଆତୁ ପରମ ଭକ୍ତ । ୧୫ ।
ଆଉଦିନେ ଝୁଡ଼ିଏ ଆମ୍ବ ନେଇ
ନୀଳ ଚକ୍ରେ ତାହା ସମର୍ପି ଦେଇ । ୧୬ ।
ଝୁଡ଼ି ଯାଇ ପୂଜା ସ୍ଥାନେ ରହିଲା
ଚୋପା ଟାକୁଆ ତ ଫେରିଆସିଲା । ୧୭ ।
ତାଙ୍କ ପତ୍ନୀ ଦେଖି ନଥିଲେ ରଥ
ଗାଡ଼ିଆ ପାଣିରେ ଦେଖାନ୍ତି ରଥ । ୧୮ ।
ପଞ୍ଚ ସଖା ବାଲି ଗାଁକୁ ଗଲେ
ଗାଡ଼ିଆରେ ରଥ ଯାତ୍ରା ଦେଖିଲେ । ୧୯ ।
ସାଧୁ ସନ୍ଥମାନେ ଆନନ୍ଦ ହେଲେ
'ପ୍ରଭୁ ଭକ୍ତ ହୁଅ' କହି ଫେରିଲେ । ୨୦ ।
ରଥେ ଲୋଡ଼ା ଦାସିଆର ତୁଳସୀ
ବାଡ଼ି ପୋଖରୀରୁ ସେ ପଦ୍ମ ଆସି । ୨୧ ।
ଦାସିଆ ଭକ୍ତିକୁ ଶତ ନମସ୍କାର
ଯୁଗେ ଯୁଗେ ଥାଉ କୀର୍ତ୍ତି ତାଙ୍କର । ୨୨ ।



# ଭକ୍ତ ସାଲବେଗ

ସତର ଶତାବ୍ଦୀ ଓଡ଼ିଶା ଆକାଶେ
ସେ ଥିଲେ ଦିବ୍ୟ ନକ୍ଷତ୍ର
ନାମ ଥିଲା ତାଙ୍କ ବୀର ସାଲବେଗ
ଯେଣୁ ସେ ମୋଗଲ ସୁତ । ୧ ।

ପିତାଙ୍କର ନାମ ଥିଲା ଲାଲବେଗ
ପେଶା ଥିଲା ଦେଶ ରକ୍ଷା
ମାତା ଥିଲେ ତାଙ୍କ ବିଧବା ବ୍ରାହ୍ମଣୀ
ନପାରେ, ନିଜକୁ ରକ୍ଷା । ୨ ।

ଦାଣ୍ଡ ମୁକୁନ୍ଦପୁର, ପୁଷ୍କରିଣୀରେ
କରୁଥିଲେ ଯେବେ ସ୍ନାନ
ଲାଲବେଗ ତାଙ୍କୁ ବଳହାରେ ଆଣି
ଯୋଡ଼ିଲେ ବିଭା ବନ୍ଧନ । ୩ ।

ଲାଲ ବେଗଙ୍କର ବିବାହର ପରେ
ସାଲବେଗ ଜନ୍ମ ନେଲେ
ଯୁବକ ହୁଅନ୍ତେ ପିତା ସହ ଯୁଦ୍ଧେ
ମେଦିନୀ କମ୍ପାଇ ଦେଲେ । ୪ ।

ପରବର୍ତ୍ତୀ କାଳେ ମାତାଙ୍କ ଶିକ୍ଷାରେ
ରାଜଗାଦି ଛାଡ଼ିଦେଲେ
ଯୁଦ୍ଧ ବି ଛାଡ଼ିଲେ ଧର୍ମତ୍ୟାଗ କଲେ
ହିନ୍ଦୁ ଧର୍ମ ଆଚରିଲେ । ୫ ।

କୃଷ୍ଣ କଥା ମାନ ଶ୍ରବଣ କରିଣ
ହିଂସା ପ୍ରଶମିତ ହେଲା
ଆନନ୍ଦ ମନରେ ବୃନ୍ଦାବନ ଯାଇ
ସାଧୁଙ୍କ ସଙ୍ଗେ ମିଳିଲା । ୬ ।

ପୁରୀ ଘୋଷଯାତ୍ରା କଥାମାନ ଶୁଣି
ମନ ଯେ ଉଛନ୍ନ ହେଲା
କିପରି ଦେଖିବ ଶ୍ରୀଗୁଣ୍ଡିଚା ଯାତ୍ରା
ବୃନ୍ଦାବନେ ବିଚାରିଲା । ୭ ।

ମହାପ୍ରଭୁଙ୍କର ପବିତ୍ର କ୍ଷେତ୍ରରେ
ପହଞ୍ଚିବା ସ୍ଥିର କଲେ
ପଦ ଯାତ୍ରା କରି ବାହାରିଲା ବେଳେ
ଅସୁସ୍ଥ ହୋଇ ପଡ଼ିଲେ । ୮ ।

ବାଟ ଚାଲୁ ଚାଲୁ ଯାତ୍ରା ସରିଯିବ
ମନରେ ଅନେକ ବ୍ୟଥା
ଗୁଣ୍ଡିଚା ସମୟ ନିକଟ ହୋଇଲା
ପ୍ରାଣେ ଥାଏ ମନବ୍ୟଥା । ୯ ।

ଭକ୍ତି ସହକାରେ ବିନୟ ମନରେ
ପ୍ରଭୁଙ୍କୁ ସ୍ମରଣ କରି
ଲେଖିଲେ ଭଜନ ଗାଇଲେ ଜଣାଣ
କୃପା କଲେ ଚକ୍ରଧାରୀ । ୧୦ ।

ଅଟକିଲା ବଳଗଣ୍ଡି ସ୍ଥାନ ଠାରେ
ପ୍ରଭୁ ନନ୍ଦିଘୋଷ ରଥ
ବୀର ସାଲବେଗ ଦର୍ଶନ କରିଲେ
ମହାବାହୁ ଜଗନ୍ନାଥ । ୧୧ ।

ଶ୍ରୀକୃଷ୍ଣ ଶରୀରେ ଦେଖେ ଜଗନ୍ନାଥ
ଭକ୍ତ କବି ସାଲବେଗ
ବିଶ୍ୱ ନିୟନ୍ତାଙ୍କ ସକଳ ରହସ୍ୟ
ଜାଣିବାକୁ ହେଲେ ବ୍ୟଗ୍ର । ୧୨ ।

ପ୍ରଶାସନ ତାଙ୍କୁ ନ ଦେଲା ଆଦେଶ
ମନ୍ଦିରେ ପ୍ରବେଶ ପାଇଁ
ଶ୍ରୀ ଜଗନ୍ନାଥଙ୍କ ଶରଣ ସେ ଯାନ୍ତି
ତିଳେ ହତାଶ ନ ହୋଇ । ୧୩ ।

ଭକ୍ତିପୂତ ଭରା ପ୍ରାର୍ଥନାରେ ତାଙ୍କୁ
ପ୍ରଭୁ ଦର୍ଶନ ଦିଅନ୍ତି
ସିଂହଦ୍ୱାର ଠାରେ ପତିତପାବନ
ମୂର୍ତ୍ତି ପ୍ରକଟ ହୁଅନ୍ତି । ୧୪ ।

ସେହିଦିନ ଠାରୁ ପୂଜା ପାଏ ରଥ
ଅଟକେ ବଳ ଗଣ୍ଡିରେ
ଭକ୍ତ ସାଲବେଗ ସମାଧି ହୋଇଲା
କୀର୍ତ୍ତି ରହିଲା ସଂସାରେ । ୧୫ ।

ଅଜ୍ଞାନ କନକ ରଚିଲା ଏ ଗୀତ
ମନ ଥାଉ ଶ୍ରୀ ପୟରେ
ପ୍ରଭୁ ଜଗନ୍ନାଥ ବଳିଆର ଭୁଜ
ଭକ୍ତି ଶ୍ରଦ୍ଧା ତାଙ୍କ ଠାରେ । ୧୬ ।



# ଶ୍ରୀ ଜଗନ୍ନାଥ କୃପା

ଥରେ ହସିଦେଲେ ରଙ୍ଗା ଅଧର
ଦୁଃଖ ଚାଲିଯାଏ ସାରା ସଂସାର । ୧ ।

କଳା ଶ୍ରୀମୁଖ ରେ କଳା ଶ୍ରୀମୁଖ
ତୋ ମୁଖ ଦେଖିଲେ ଅସୀମ ସୁଖ । ୨ ।

ପଦ୍ମ ଲୋଚନେ ସୁଦୃଷ୍ଟି ପଡ଼ିଲେ
ସବୁ ରୋଗ ବ୍ୟାଧି ଅପସରିରେ । ୩ ।

ଦୁନିଆ ଯାକର ସବୁ ଭଗତ
ସଭିଏଁ ହୁଅନ୍ତି ତୁମରି ମିତ । ୪ ।

ତୁମ ପିନ୍ଧାମାଳ ମଥାରେ ଥାଉ
ଏହିପରି ଭକ୍ତ ଜୀବନ ଯାଉ । ୫ ।

ତୋ ଶ୍ରୀ ପୟରକୁ ଥରେ ଛୁଇଁଲେ
ମୋକ୍ଷ ଦରକାର ନାହିଁ ଜୀବନେ । ୬ ।

ତୁଳସୀ ଦୟଣା ଚନ୍ଦନ ପାଇ
ତୃପ୍ତ ହେଉ ଆତ୍ମା ଜଗତ ସାଇଁ । ୭ ।

❀



# ମହୋଦଧି ଓ ପୁରୀ କୈବର୍ତ୍ତ

ଦଦରା ନାବରେ ବସିଛୁ ଭାଇ
କାହାକୁ ତୋହର ପରୁଆ ନାହିଁ । ୧ ।
ଆଗକୁ ଆଗକୁ ନଉକା ବାହି
ଭଲ ମନ୍ଦ କିଛି ବିଚାର ନାହିଁ । ୨ ।
କିଏ ତୋତେ ଏହି ମନ୍ତ୍ର ଦେଇଛି
ମନ୍ତର ନା ତନ୍ତ୍ର ସେ ଅଟେ କିଛି । ୩ ।
ଶୁଭୁଛି କି ନାହିଁ ମୋହର ଡାକ
ଆଖି ଖୋଲି ଏବେ ଆକାଶ ଦେଖ । ୪ ।
ଆକାଶରେ ଭରା ନୀଳ ଜୀମୂତ
ବିଜୁଳି ଦେଖାଏ ତୁମକୁ ବାଟ । ୫ ।
ଘଡ଼ ଘଡ଼ି ମାରି କରେ ଶବଦ
ଆକାଶେ ବଜାଏ ବାଜା ବାଇଦ । ୬ ।
ମାଝୀରେ କିମ୍ପା ତୁ କଥା ନ ଶୁଣୁ
ଦରିଆ ମଝିରେ କଅଣ କରୁ । ୭ ।
ପ୍ରଶ୍ନ ଶୁଣି ମାଝୀ ଉତ୍ତର ଦେଇ
ପରିବ୍ରାଜକ ତୁ ଅଟୁରେ ଭାଇ । ୮ ।
ସଭିଏ ଜାଣନ୍ତି ପୁରୀ କୈବର୍ତ୍ତ
ପେଶା ମୋର ଖାଲି ସମୁଦ୍ର ଗସ୍ତ । ୯ ।
କିଛି ନ ହେବରେ ଭଗତ ଭାଇ
ଅଛି ସାହା ଜଗନ୍ନାଥ ଗୋସାଇଁ । ୧୦ ।
ସମୁଦ୍ର ସ୍ନାନ, ମନ୍ଦିର ଦର୍ଶନ
ମନ ବାଞ୍ଛା ତୋର ହେବ ପୂରଣ । ୧୧ ।
ବାରମ୍ବାର ଆସୁଥିବୁ ତୁ ପୁରୀ
ମନସ୍କାମନା ତୋ ଯିବରେ ପୁରି । ୧୨ ।



# ଭକ୍ତ କବି ଜୟଦେବ

ନାଚେ ନାଚେ ମନ ମୟୂର ମୋ ନାଚେ ନାଚେ
ଭକ୍ତ ଜୟଦେବ ଗୁରୁତୁ ନାଚେ ନାଚେ । ୧ ।

ଜଗନ୍ନାଥ ଇଚ୍ଛାମତେ ଜନମ ଯେ ତୁମ୍ଭ
ମାତା ତୁମ ରମାଦେବୀ ପିତା ଭୋଜଦେବ । ୨ ।

ପ୍ରାଚୀ ନଦୀ କୂଳ କେନ୍ଦୁବିଲ୍ୱ ଗ୍ରାମେ ଜନ୍ମ
ସବୁ ଛାଡ଼ି ସନ୍ୟାସ ହୋଇ ପୁରୀ ଯେ ଗମନ । ୩ ।

ଦକ୍ଷିଣ ଭାରତ ଦେବଶର୍ମା ଭକ୍ତ ପ୍ରବର
ନିଦ୍ରାରେ ଦେଖନ୍ତି ସ୍ୱପ୍ନ ଜଗା ମହା ପ୍ରଭୁର ।୪ ।

ବଡ଼ଦାଣ୍ଡେ ଏକ ସନ୍ୟାସୀ ବଟ ବୃକ୍ଷତଳେ
ତୋ କନ୍ୟା ପଦ୍ମାବତୀ କୁ ତୁ ବିବାହ ଦେବୁରେ । ୫ ।

ନିଜର ପ୍ରତିଷ୍ଠା ନ ଥାଇ ସଂସାର କିପରି ?
ପ୍ରଭୁ ସପ୍ନାଦେଶେ ଯେ ବିବାହ ବନ୍ଧନ ଯୋଡ଼ି । ୬ ।

ଦ୍ୱିତୀୟ ସପ୍ନାଦେଶ ଗୀତ ଗୋବିନ୍ଦ ଲେଖିବା
ଏହା ହେବ ମହାକାବ୍ୟ ସଂଦେହ ନ ଥିବା । ୭ ।

ତୃତୀୟ ସପ୍ନାଦେଶ ଅଜୟ ନଦୀ ଗର୍ଭର
ରାଧା ମାଧବ ମୂର୍ତ୍ତି ଉଦ୍ଧାରି ସ୍ଥାପନା କର । ୮ ।

ଦ୍ୱାଦଶ ସର୍ଗରେ ଗୀତ ଗୋବିନ୍ଦ ସରିଲା
ଦଶାବତାରରେ ବାସ୍ତରିଟି ଶ୍ଳୋକ ଥିଲା । ୯ ।

ଶ୍ଳୋକ ସହ ଗୀତିନାଟ୍ୟ 'ରାଧାମାଧବ'ର
ହେଲା ଯେ ଏହା ଚବିଶି ରାଗର । ୧୦ ।

ନିତି ନାଟ୍ୟ ଗୀତ ପ୍ରଭୁଙ୍କର ସାମନାରେ
ପଦ୍ମାବତୀ ନୃତ୍ୟ ରତା ତୁମ ନିର୍ଦ୍ଦେଶରେ । ୧୧ ।

ଗୀତଗୋବିନ୍ଦ ଯେ ଦେଶେ ବିଦେଶେ ଆଦୃତ
ବାଲ୍ମିକୀ ଆଦିଙ୍କ ସହ ତୁମେ ସମ କକ୍ଷତ । ୧୨ ।

ଲେଖାଯେ ହୋଇଛି ଏହା ସଂସ୍କୃତ ଭାଷାରେ
ଏହା ପଢ଼ାଯାଏ ପ୍ରତି ହିନ୍ଦୁ ମନ୍ଦିରରେ । ୧୩ ।

ରାଜା ଆଜ୍ଞା ଦେଇ ଗୀତନାଟ୍ୟ ବନ୍ଦ କଲେ
କୃଷ୍ଣ ରୂପେ ଜଗନ୍ନାଥ ମାଳି ଝିଅଠୁ ଶୁଣିଲେ । ୧୪ ।
ମାଳି ଝିଅ ବାଇଗଣ ତୋଳିବା ବେଳରେ
ଗୀତ ଗୋବିନ୍ଦ ବୋଲୁଥାଏ ମଧୁର କଣ୍ଠରେ ।୧୫।
ଗୀତ ଶୁଣୁ ଶୁଣୁ ବସ୍ତ୍ର କଣ୍ଟାରେ ଲାଗିଲା
ମହା ପୁଣ୍ୟବତୀ ନାରୀ ନିସ୍ତରିସେ ଗଲା । ୧୬ ।
ରାଜା ନିଜ ଭୁଲ୍ ବୁଝି ଲଜ୍ଜିତ ହୋଇଲେ
ପୁନଶ୍ଚ ଗୀତ ଗୋବିନ୍ଦ ଆରମ୍ଭ କରିଲେ । ୧୭ ।

---

*ଅଜୟ ନଦୀ କୂଳସ୍ଥ ୧୯୪୪ କୁଟ ଶିବ ମନ୍ଦିର ଦକ୍ଷିଣ ପାର୍ଶ୍ୱ ଶିଳାରେ ଲିଖିତ (ଆଲକାତରା 'ର)*

**"ଜୟଦେବ ପଦ୍ମାସନ**
**ସୁର ଗରଳ ଖଣ୍ଡନ**
**ଦେହି ପଦ ପଲ୍ଲବ ମୁଦାରଂ"**

*(ଶ୍ରୀ ଶ୍ରୀ ଗ୍ରନ୍ଥମାଳ ପୁସ୍ତକରେ ଲେଖନ ଜୟଦେବ ପୁରୀ ବାସ, ସମୁଦ୍ର ସ୍ନାନ)*

X X X

ପୁସ୍ତକ ରଖିଆ ସାଧୁ ସ୍ନାନ କରିବାରେ
ଗମନ କରିଲା ତେବେ ସାଗରର ନୀରେ

X X X

ଦେହି ପଦ ପଲ୍ଲବ ମୁଦାରମ୍ ଇତି
ଲିଖିଲା ଚଳିଲା ହରି ଅତି ଦ୍ରୁତ ଗତି

X X X

କ୍ଷଣମାତ୍ର ଦେଖି ପୁନ ସମୁଦ୍ର ଗମନ
ସ୍ନାନ କରି ପୁଣି ଅର୍ଦ୍ଧ କ୍ରୋସ ଆଗମନ

---

ଜୟଦେବ ଫେରି ଦେଖନ୍ତି ପ୍ରଭୁ ଗୀତ ଲେଖି
"ଦଶମ ସର୍ଗଃ" ଗୀତ ଗୋବିନ୍ଦରେ ରଖି । ୧୮ ।

ପଦ୍ମାବତୀ ତୁହି କେତେ ପୁଣ୍ୟ ଥିଲୁ କରି
ତୁ ଦେଖିଲୁ, ମୁଁ ନ ଦେଖିଲି, ଜୟଦେବ ଭାଳି । ୧୯ ।
ବଡ଼ ସିଂହାର ବେଶରେ ତିନି ଯେ ଠାକୁର
କେନ୍ଦୁଲି ଖଣ୍ଡୁଆ ପିନ୍ଧି ଦିଶନ୍ତି ସୁନ୍ଦର । ୨୦ ।
କେନ୍ଦୁଲି ବୁଣା ଶାଢ଼ୀରେ ଗୀତ, ଗୋବିନ୍ଦ ଲେଖା
ସୁଇଜର୍‌ଲ୍ୟାଣ୍ଡ ସଂଗ୍ରହଣାଳୟେ ହୋଇଛି ରଖା ।୨୧।
ଶାଢ଼ୀ, ଉତ୍ତରୀୟ, ଖଣ୍ଡୁଆ କେନ୍ଦୁଲି ବୁଣା
ଦେଶର ସଂଗ୍ରହଣାଳୟରେ ନମୁନା । ୨୨ ।
ଜୟଦେବ କହନ୍ତି - ସାରା ରାତି ବୁଣାଯିବ
ବୁଣାଳି କହନ୍ତି ଗୀତ ଗୋବିନ୍ଦ ବୋଲିବ । ୨୩ ।
ସପ୍ତମ ସର୍ଗେ୍ଃ ଜୟଦେବ ସମାଧିସ୍ଥ ହୋଇ
ଗୀତ ବନ୍ଦ ଦେଖି ଏକ ସାଧୁ ଦର୍ଶନ ଦେଇ । ୨୪ ।
ଗିନି ବଜାଇ ସେ ଜଣାଣ୍ ପଢୁଥାନ୍ତି
ସାନ ଭାଇ ଜୟଦେବର କହି ଶୁଣାଅନ୍ତି । ୨୫ ।
ନାହିଁ ମୋ ସାନଭାଇ ପ୍ରଭୁ ଦେଇ ଦରଶନ
ପ୍ରଣାମ ଘେନ ବୁଣାଳି,ତୁମେ ଅତି ଭାଗ୍ୟବାନ ।୨୬।
କିଛି ମତେ ଜୟଦେବ ଓଡ଼ିଶା ବାହାର
ବହୁ ପ୍ରମାଣ ରହିଛି ସେତ ଓଡ଼ିଶାର । ୨୭ ।
ବହୁଦିନ ଅନ୍ତରେ ଅସନ୍ତୁ କବିବୃନ୍ଦ
ଗୀତ ଗୋବିନ୍ଦ ରଚିଲେ ବଦଳାଇ ଛନ୍ଦ । ୨୮ ।
"ଅଭିନବ ଗୀତ ଗୋବିନ୍ଦ" ନାମ ଦେଲେ
ସନ୍ଥମାନେ ତାହା ଦେଖି ଅସହ୍ୟ ମଣିଲେ । ୨୯ ।
ଦୁଇ ବହି ତଳେ ରଖି ମନ୍ଦିର କିଳିଲେ
ପରଦିନ ଗୀତ ଗୋବିନ୍ଦ ରତ୍ନ ବେଦୀରେ । ୩୦ ।
ସାଧୁ ତିରସ୍କାର ଅଟେ ଆପଣା ଭିଆଣ
ଏହାକୁ ଉଠାଇ ନିଅ ପ୍ରଭୁ ଆର୍ତ୍ତତ୍ରାଣ । ୩୧ ।



# ସନ୍ଥ କବୀର

ଜନମ ତୁମର ବାନାରସ ପାଖ
ଗାଆଁରେ ୧୩୯୮ ରେ
ଜନ୍ମଦାତ୍ରୀ ମାତା ବିଧବା ଥିବାରୁ
ଭସାଇଲେ ପଦ୍ମ ଫୁଲରେ । ୧ ।
ନିଃସନ୍ତାନ ମୁସଲମାନ ଦମ୍ପତି
ପାଳିଲେ ତୁମକୁ ସ୍ନେହରେ
କବୀର ବୋଲି ତୁମ ନାମ ଦେଇଥିଲେ
ତୁମେ ଭୋଳ ପ୍ରଭୁ ଭକ୍ତିରେ । ୨ ।
ଜଗନ୍ନାଥ ଲୀଳା ଶୁଣି କର୍ଣ୍ଣରେ
ମନ ଏକନିଷ୍ଠ ଦରଶନରେ
ଏହି ସମୟରେ ପୁରୀ ସମୁଦ୍ର ଜଳ
ଧସି ଆସେ ବଡ଼ ଦେଉଳ । ୩ ।
ରାଜା ଏହା ଦେଖି ଭୋକ ଉପାସେ
ରହିଲେ ମନ୍ଦିର ବେଢ଼ାରେ
ତିନିଦିନେ ପ୍ରଭୁ ଗୁହାରି ଶୁଣିଲେ
ରାଜାଙ୍କୁ ସ୍ୱପ୍ନେ ଆଦେଶ ଦେଲେ । ୪ ।
କବୀର ସନ୍ଥକୁ ଆମନ୍ତ୍ରଣ
କରି ଆଣରେ ଭଲେ
ଆମନ୍ତ୍ରଣ ପାଇ ଆସନ୍ତି କ୍ଷଣେ
ଆସି ଧ୍ୟାନସ୍ଥ ହେଲେ । ୫ ।
ଆଶା ବାଡ଼ି କାମରେ ଲାଗେ
ସମୁଦ୍ର ଅଧାକୋଶ ହଟେରେ
ଭାବ ବିହ୍ୱଳ ହେଲେ ଠାକୁର
କବୀରଙ୍କ ଭକ୍ତି ଅପାର । ୬ ।
କବୀର ଗଢ଼ିଲେ ଚୌରା
ପୁରୀ ସମୁଦ୍ର କୂଳେ
ଅଦ୍ୟାବଧି ଅଛି ଏହା
କବୀର ସ୍ମରକୀ ନାମରେ । ୭ ।

ପୁରୀ ରହଣି କାଳରେ କବୀର
ରଚୁଥାନ୍ତି ଗାଉଥାନ୍ତି ଜଣାଣ
ଜାତି ଭେଦ ମୂର୍ତ୍ତି ପୂଜା ବିଶ୍ୱାସ ନଥିଲା
ବିଶ୍ୱାସ - ଦୟାକ୍ଷମା ମାନବୀୟ ଗୁଣ । ୮ ।
ମୃତ୍ୟୁ ସମୟରେ ଯେବେ
ଉଠା ଯାଏ ଚଦର
କିଛି ଫୁଲ ପଡ଼ିଅଛି
ନାହିଁ ମର ଶରୀର । ୯ ।
ହିନ୍ଦୁ ମୁସଲମାନ ପ୍ରୀତି
ବଢ଼ିଲା ଏଭଳି
କିଛି ଫୁଲ ବାଣ୍ଟି ନେଲେ
ଦେଲେ ତିଳାଞ୍ଜଳି । ୧୦ ।
କବୀର ଦୋହା ନିତି ପ୍ରତି
ପଢ଼ ହେ ସଜ୍ଜନ
ଜାତି ଭେଦ ଭୁଲିଯିବ
ଦୃଢ଼ ହେବ ସଂଗଠନ । ୧୧ ।





# ପ୍ରାର୍ଥନା

ଘେନ ନିବେଦନ କାଳୀୟଗଞ୍ଜନ
ଦିନ ମୋର ଯାଉ ସରି
ଏ ପ୍ରାପ୍ତ ବୟସେ ସଂସାର ଜଞ୍ଜାଳ
ଦିଏ ମନ ହୃଦ ଟାଳ ।୧।

ତୁମରି କରୁଣା ପ୍ରାପ୍ତ ହେଲେ ପ୍ରଭୁ
ଜୁଇ ମୋର ଯିବ ଜଳି
ଦେଖୁଥିବେ ଲୋକେ ହସୁଥିବ ଆତ୍ମା
ପରମ ଆତ୍ମାରେ ମିଳି
ଆହେ ପ୍ରଭୁ ପରମ ଆତ୍ମାରେ ମିଳି । ୨ ।

ଶ୍ରୀମଦ୍ ଭାଗବତ ବାଣୀ ପରା ପ୍ରଭୁ
"ଏ ଯିବ ଯିବାର ନିକଟେ
ନେଇ ସଂଚଇ ଅନ୍ୟ ଘଟେ"
ଏହାତ ଅବ୍ୟର୍ଥ ଅଟେ । ୩ ।

ଅନ୍ୟ ଘଟ ପଛେ ଅଜ୍ଞାତରେ ଥାଉ
ବାର୍ଦ୍ଧକ୍ୟରୁ ମିଳୁ ମୁକ୍ତି
ଆହେ ଲକ୍ଷ୍ମୀ ପତି କରୁଣା ବାରିଧି
ହେଉ ମୋତେ ଏହା ପ୍ରାପ୍ତି । ୪ ।

ମୋକ୍ଷରେ ମୋ ଲୋଡ଼ା ନାହିଁ ପ୍ରଭୁ
ଶ୍ରୀ ଚରଣ ତଳେ ସ୍ଥାନ
ସଦା ରହିଥାଉ ଆହେ ମହାବାହୁ
ଏତିକି ଘେନ ଜଣାଣ । ୫ ।
ଆହେ ପ୍ରଭୁ ଏତିକି ଘେନ ଜଣାଣ...(୩ଥର)



# ଆର ଜନ୍ମ ପାଇଁ ଭିକ୍ଷା

ଆର ଜନ୍ମ ଭିକ୍ଷା ଶୁଣିବୁ କାଳିଆ
ଛୋଟା, ଲେଙ୍ଗଡ଼ା ମୋ ପାଇଁ ବଢ଼ିଆ । ୧ ।
ପୁରୀ, ଗରିବ ଘରେ ଜନ୍ମ ଦେବ
ପେଟ ଚାଖଣ୍ଡକ ପାଇଁ ଚିନ୍ତା ଥିବ । ୨ ।
ସେ ଚିନ୍ତା କେ ସହେ ଚକାନୟନ
ତୋତେ ସୁମରିଲେ ସବୁ ହୁଏ ଉଭାନ । ୩ ।
ତୋ ବଡ଼ ଦାଣ୍ଡେ ଭିକ୍ଷା ଦିଏ ଆନନ୍ଦ
ଲେଙ୍ଗଡ଼ାର ମନ ହେଉ ଆନନ୍ଦ । ୪ ।
ଶୀତ, ଖରା, ବର୍ଷାରେ ହେବି ଆତୁର
ତୋର ନାମ ଜପି ହେବି ଉଦ୍ଧାର । ୫ ।
ବାର୍ଦ୍ଧକ୍ୟରେ ଅଣ୍ଟା ହେଲେ ଅଧଡ଼
ଅନ୍ୟ ବୃତ୍ତିରେ ନ ଥିବ ଆଦର । ୬ ।
କଳିଯୁଗ କୁବ୍‌ଜା ପଛେ ହୋଇବି
ତୋ ଦର୍ଶନ ବିନା ତୋ ନାମ ଜପିବି । ୭ ।
ରଥଯାତ୍ରା ବେଳେ ତୋ କରୁଣା ହେଲେ
ପଡ଼ିଯିବ ପାପ ଆକ୍ଷୀ ତୋ ରୂପରେ । ୮ ।
ବଞ୍ଚିବା ବେଳେ ଯଦି ତୋ ଦର୍ଶନ ନାହିଁ
ଶବ ଯିବା ତୋ ସାମ୍ନାରେ ମନା ନାହିଁ । ୯ ।
କହଇ କନକ ହୀନ ଜାତି ରେ ନାରୀ
ଦ୍ରୌପଦୀ ପରି ରଖିବ ପ୍ରାର୍ଥନା ମୋହରି । ୧୦ ।



# ବାହୁଡ଼ା ଯାତ୍ରା

ବର୍ଷକେ ଥରେ ଆସଇ ବାହୁଡ଼ା ଯାତ୍ରା
ଫେରିବେ ପ୍ରଭୁ ଭେଟିବେ ଲକ୍ଷ୍ମୀ ମାତା । ୧ ।
କାନ୍ଦେ ବାଣୀକଣ୍ଠ ନିମାଇ ହରିଚନ୍ଦନ
"ବାହୁଡ଼ା ଦିନ ମୋତେ ବାହୁଡ଼ାଇ ନିଅ ହେ ମହାବାହୁ" । ୨ ।
ସତେ ବାହୁଡ଼ାରେ ବାହୁଡ଼ି ଗଲେ
ଓଡ଼ିଶାବାସୀ ସ୍ତବ୍ଧ ହୋଇଲେ । ୩ ।
ସୁଖ ପାଇଁ ତୁମେ ଡାକିଲେ ନ ଶୁଣ
ବାହୁଡ଼ାଇ ନେବାରେ କାହିଁକି ନିପୁଣ । ୪ ।
ଲୋକ ଲଜ୍ଜା ତୋର ନାହିଁରେ କାଳିଆ
ମୃତ୍ୟୁକୁ ହଁ କାରି କରୁଥାଉ ଲୀଳା । ୫ ।
ଯେ ଡାକେ ତୋତେ ଦୀର୍ଘ ଜୀବନ ପାଇଁ
ପିଲା ହୋଇଥିବ ରୋଗ ଧରିଥାଇ । ୬ ।
କେତେ ତୁ କାହାକୁ ତାରିଛୁ କାଳିଆ
ସତ କହ ବାରେ ନ ହୋଇ ଛଳିଆ । ୭ ।
ବର୍ତ୍ତମାନ ବେଳ ଆସିଛି କାଳିଆ
ହିସାବ କରିବୁ ସମସ୍ତଙ୍କ ମନ ଛୁଆଁ । ୮ ।
ଯେ ମାଗିବ ଜୀବନ ଦେବୁ ତାହାକୁ
ମୃତ୍ୟୁ ଯେ ମାଗିବ ବୁଝି ସୁଝି ଦେବୁ ତାକୁ । ୯ ।
କନକ ଲେଖିକା ମାଗୁଛି ମୃତ୍ୟୁ
ଭକ୍ତି ହୀନ ଯେଣୁ ଇଛଇ ମୃତ୍ୟୁ । ୧୦ ।





# ରଥଯାତ୍ରା

ଆଈ :- ନନୀ ଲୋ ଯିମୁ ପରା ରଥ ଯାତରା
ସମଲପୁରରୁ ପୁରୀ ଯିମୁ ପରା । ୧ ।
ତୁ ନାଚିବୁ ଗାଇବୁ ବଡ଼ ଦାଣ୍ଡରେ
ତୁ କି ଗୀତ ଗାଇବୁ କହନି ବାରେ । ୨ ।

ନାତୁଣୀ :- ଆଈ ! ରଥ ଆଗରେ ଗାଇଲେ ଗୀତ
ରଥ ଚାଲିଯିମ ଗଡ଼ି ଗଡ଼ିତ । ୩ ।
ମୁଁ ଗାଇମି ଜଗନ୍ନାଥର ଗୀତ
ଢୁଲ୍ କି ବାଜା ଥିଲେ ଭଲ ହୋଇତ । ୪ ।
ଗୀତଟି - କଦାଚିତ୍ କାଳିନ୍ଦୀ ତଟ
ସୁନିବେ ସମସ୍ତେ ମନ୍ ଉଚାଟ । ୫ ।
କେତେ ସ୍ୱର ଦେଇ ଗାଆନ୍ତି ଗୀତ
ଜଗା ଶୁଣି ପୁନି ହୁଏ ଉଷତ । ୬ ।
"ରଥ ବୋଲେ ଘୁଂ, ଚକ ବୋଲେ ଘୁଂ
ଯାହାର ମଥାରେ ସିନ୍ଦୁର ଟୋପା
ତାହାରି ଘଇତା ମୁଁ" । ୭ ।

ଆଈ :- କି ନାଚ ନାଚିବୁ ତୁ ନାଚିଯା ନନୀ
ବଡ଼ ଦାଣ୍ଡ ଭରା ଯାତ୍ରୀରେ ପୁଣି । ୮ ।

ନାତୁଣୀ :- ମୋର ନାଚ ପରା ଦେଖିବୁ ଆଈ
କାଲିଆ ନାଚ କୁ ବ୍ରହ୍ମାଣ୍ଡ ଚାହିଁ । ୯ ।
ନାଚିବି ମୁଁ ତାଥେଇ ତାଥେଇ ତାଥେୟା
ଦାସିଆ ନଡ଼ିଆ ସତେ ବଡ଼ ବଢ଼ିଆ । ୧୦ ।
ଗୋଟି ପୁଅ ନାଚ ଦେଖ୍‌ଲୋ ଆଈ
ନାଚଇ ସେ ପ୍ରାଣ ମୁରୁଛି ଦେଇ । ୧୧ ।
ପାଇକ ନାଚଟି ଖୋର୍ଦ୍ଧା ଜିଲ୍ଲାର
କିନେ ମନ ପ୍ରଭୁ ଆଉ ଭକ୍ତର । ୧୨ ।

ପୁରୁଷୋତ୍ତମ କ୍ଷେତ୍ର ନିଆଁର ଖେଳ
ଦେଖି ଲାଗେ ଭୟ ଆଉ ବିକଳ । ୧୩ ।

ଆଈ :- ଆଲୋ ନନୀ ଏବେ ବେଲ୍ ହେଲାନ୍
ରତ୍ନ ବେଦୀ ଛାଡ଼ିବେ ଭଗବାନ୍ । ୧୪ ।
ସୁଦର୍ଶନ ଆଗେ ପହଣ୍ଡି ସାରି
ଦେବଦଳନ ରଥେ ବିଜେ କରି । ୧୫ ।
ପ୍ରଭୁ ବଳଭଦ୍ର ପହଣ୍ଡି ହୋଇ
ତାଳଧ୍ୱଜ ରଥେ ବିରାଜଇ । ୧୬ ।
ସୁଭଦ୍ରା ମାତା ଯେ ଦେବଦଳନେ
ଆହାକି ଦୃଶ୍ୟ ଏ ଆସେ ନୟନେ । ୧୭ ।
କାଳିଆ ଠାକୁର ପହଣ୍ଡି ହେବ
ଚର୍ମ ଚକ୍ଷୁ ଦେଖି ମୁକ୍ତି ଲଭିବ । ୧୮ ।
ଅଚଲ୍ ମହାମେରୁ ନାମଟି ତାର
ରତ୍ନ ବେଦୀ ଛାଡ଼ିବାକୁ ଅଚଲ୍ । ୧୯ ।
ରତନ ବେଦୀରୁ ଗୁଣ୍ଡିଚା ଯାଏ
କେବେ ହୋଇପାରେ ଅଚଲ୍ ସିଏ । ୨୦ ।
ଅଚଲ୍ ଇତିହାସ ସୁନ୍‌ଲୋ ନନୀ ଗୋରି
ସାଲବେଗ ପରି ଭକ୍ତ ପାଇଁ ଅପେକ୍ଷା କରି ।୨୧।
ଜଗା କାଳିଆର ଲୀଳା ବହୁଳ
କାହିଁ ନ ମିଳିବ ସାରା ସଂସାର । ୨୨ ।
ସେଥିପାଇଁ ନାମ ଜଗତନାଥ
ଦାରୁ ବ୍ରହ୍ମ ମୂର୍ତ୍ତି ଅତି ବିଚିତ୍ର । ୨୩ ।
ନନ୍ଦିଘୋଷ ରଥେ କାଳିଆ ବିଜେରେ
ତିନି ରଥ ଚାଲେ ବଡ଼ ଦାଣ୍ଡରେ । ୨୪ ।
ତିନି ରଥ ଲାଗେ ଗୁଣ୍ଡିଚା ମନ୍ଦିରେ
ଆଜି ଉପାଖ୍ୟାନ ଏଇଠି ସରେ । ୨୫ ।



# କାଞ୍ଚି ଅଭିଯାନ

*(ପୁରୁଷୋତ୍ତମ ଦେବଙ୍କ କାଞ୍ଚି ଅଭିଯାନ ବେଳେ ଘଟିଥିବା ସମସ୍ତ ଘଟଣାବଳୀକୁ କାଞ୍ଚି ଅଭିଯାନରେ ସମ୍ପୂର୍ଣ୍ଣ ଭାବରେ ବର୍ଣ୍ଣନା କରାଗଲା)*

ଠାକୁର ରାଜା ପୁରୁଷୋତ୍ତମ ଯେ
ମହା ପ୍ରତାପଶାଳୀ
କାବେରୀ ନଦୀ ପାର ହୁଅନ୍ତି ସେ
ମିତ୍ର ବାସୁଙ୍କୁ ସଙ୍ଗେ ଧରି । ୧ ।

ରକ୍ଷାକର, ରକ୍ଷାକର ଶବ୍ଦରେ
ଚାହାନ୍ତି ଚାରି ଦିଗରେ
ଅଶ୍ୱାରୋହୀ ବାଳକ ଦେଖିଲେ ସେ
ଧାଆନ୍ତି ଅତି ବେଗରେ । ୨ ।

ପଛେ ଜାଣନ୍ତି ସେ କାଞ୍ଚି ରାଜଜେମା
ଅଶ୍ୱ ଚାଳନା ଶିଖନ୍ତି
ରୁପାମ୍ବିକା ତାଙ୍କୁ ଅନୁରୋଧ କରି
ଅଶ୍ୱ ଚାଳନା ଶିଖନ୍ତି । ୩ ।

ଦୁଇଜଣ ମଧ୍ୟେ ପ୍ରେମର ସମ୍ପର୍କ
ବଢ଼ଇ ଦିନକୁ ଦିନ
ପୁରୀ ଘୋଷଯାତ୍ରା ନିମନ୍ତ୍ରଣ ଦେଇ
ଡାକନ୍ତି ପୁରୁଷୋତ୍ତମ । ୪ ।

କାଞ୍ଚି ରାଜା ସପରିବାରେ ଆସନ୍ତି
ଅତିଥିଶାଳାରେ ବାସ
ମା ଜନନୀ ରୁପାମ୍ବିକାଙ୍କୁ ଦେଖିବେ
ନଗର ମଧ୍ୟକୁ ଅସ । ୫ ।

ରୁପାମ୍ବିକାଙ୍କୁ ସୁନା ଖଡ଼ିକା କହି
ପଦ୍ମାବତୀ ନାମ ଦିଅନ୍ତି
ହୀରା ମୁଦିଟିଏ ଅତି ହରଷରେ
ହାତେ ପିନ୍ଧାଇ ଦିଅନ୍ତି । ୬ ।

ହେଲା ରଥଯାତ୍ରା ଛେରା ପହଁରାଟି
ପୁରୁଷୋତ୍ତମ କରନ୍ତି
କାଞ୍ଚି ରାଜା ଶାଲ୍ୱ ନରସିଂହ ଦେବ
କ୍ରୋଧେ ଉନ୍ମତ ହୁଅନ୍ତି । ୭ ।

ଏ ଜଣେ ଚାଣ୍ଡାଳ ଝାଡୁ କରୁଥାଏ
ଦାସୀ ପୁତ୍ର ପୁଣି ଅଟଇ
ନିଜ ଦେଶେ ଯାଇ ଯୁଦ୍ଧ ଘୋଷଣା
ବିବାହ ଭାଙ୍ଗିବା ପାଇଁ । ୮ ।

ପୁରୁଷୋତ୍ତମ ବହୁ ବିଚାର ପରେ
ପାଳିଲେ ମାତୃ ବାଣୀ
ଚାଲିଲେ ନିଜର ସୈନ୍ୟମାନ ନେଇ
ଯୁଦ୍ଧରେ ମିଶିବେ ପୁଣି । ୯ ।

ପ୍ରଥମ ଯୁଦ୍ଧେ ହାରିଲେ ପୁରୁଷୋତ୍ତମ
ଫେରି ଆସିଲେ ସଦେଶ
ମାତା ଜନନୀଙ୍କ ପୁନଶ୍ଚ ଆଦେଶେ
ଦ୍ୱିତୀୟ ଯୁଦ୍ଧେ ପ୍ରବେଶ । ୧୦ ।

ମହା ପ୍ରଭୁଙ୍କୁ କଲେ କ୍ଷମା ପ୍ରାର୍ଥନା
ନିଜ ଦୋଷାବଳୀ କହି
ଦର୍ଶନ ନ କରି ଯାଇଥିଲି ପ୍ରଭୁ
ନିସ୍ଫଳ ଫେରିଲି ମୁହିଁ । ୧୧ ।

ମହାପ୍ରଭୁଙ୍କର ଆଶୀର୍ବାଦ ପାଇ
କାଞ୍ଚି ଅଭିଯାନେ ଚାଲିଲେ
ତୃଷାତୁର ହୋଇ ଅଗମ୍ୟ ରାସ୍ତାରେ
ଦୁଧ, ଦହି ପାନ କଲେ । ୧୨ ।

ଦହି ବିକୁଥିଲା ଏକ ମହିଳା
ନାମ ତା' ଥିଲା ମାଣିକ
ରାଜାଙ୍କୁ ବଢ଼ାଇ ଦେଇ ମୁଦିଟିଏ
କହେ ସେ ଏହାକୁ ଦେଖ । ୧୩ ।

ସତେ ! କେଡ଼େ ଭାଗ୍ୟବତୀ ତୁହି ଲୋ
ପ୍ରଭୁ ଜଗନ୍ନାଥଙ୍କ ମୁଦି
ପ୍ରଭୁଙ୍କୁ ସାକ୍ଷାତେ ଦର୍ଶନ କରିଛୁ
ଆଣି ଅଛୁ ଏହି ମୁଦି । ୧୪ ।

ମାଣିକର ହଜିଲା ବୁଦ୍ଧି ଓ ଜ୍ଞାନ
ଗୃହ ନ ଯାଇ କଲା ଧ୍ୟାନ
ବେଳେ ନିଶ୍ଚେ ଫେରିବେ ଜଗା, ବଳିଆ
କରି ବସେ ତାଙ୍କୁ ଦର୍ଶନ । ୧୫ ।
ମାଣିକର ଦେଖି ଆକୁଳ କ୍ରନ୍ଦନ
ସପ୍ନରେ ବୁଝାନ୍ତି ଅନନ୍ତ
ତୋ ନାମେ ଗ୍ରାମ ନାମ ମାଣିକ ପାଟଣା
ବଂଧା ଦୋଷ କଟି ଯିବ ତ । ୧୬ ।
ଜଗନ୍ନାଥ ମହାପ୍ରଭୁ ୨ୟ ଯୁଦ୍ଧେ
ଅଦୃଶ୍ୟେ କୌଶଳ ଦେଖାନ୍ତି
ନିଜହସ୍ତୁ ଦୁଇ ଜ୍ୟୋତି ଛାଡୁଥାନ୍ତି
ଶତ୍ରୁକୁ ଦୁର୍ବଳ କରନ୍ତି । ୧୭ ।
ନିଜଦଳ ସୈନ୍ୟମାନେ ପ୍ରଭୁବଳେ
ରଣ ହୁଁକାର କରନ୍ତି
ଯୁଦ୍ଧରେ ହରାଇବା ପାଇଁ ସେମାନେ
ନିଜକୁ ସମର୍ଥ ମଣନ୍ତି । ୧୮ ।
ହାରିଗଲେ କାଞ୍ଚିରାଜା ୨ୟ ଯୁଦ୍ଧେ
କନ୍ୟା ସେନାପତି ଆସେରେ
ସେ ପୁଣି ହାରିଲେ ଯୁଦ୍ଧରେ, ଆହାରେ
ରହିଲେ ଯୁଦ୍ଧ ବନ୍ଦିନୀ ରେ । ୧୯ ।
ଶ୍ରୀମନ୍ଦିର ଅତିଥି ଶାଳାରେ
ଅଟନ୍ତି ସେ ଯୁଦ୍ଧ ବନ୍ଦିନୀରେ
ଧମକ ଦିଅନ୍ତି ପୁରୁଷୋତ୍ତମ ଯେ
ବିଭା ଦେବେ ଯୋଗ୍ୟ ଚାଣ୍ଡାଳେ । ୨୦ ।
କାଞ୍ଚି ରାଜ ଜେମା ମୁଣ୍ଡ ନ ନୁଆଇଁ
କହନ୍ତି ଚରମ ବାଣୀ
"ଏପରି ହେଲେ ମୁଁ ଆତ୍ମଘାତୀ ହେବି
ମାତାଙ୍କ ହୀରା ମୁଦି ଚୁଚୁମି" । ୨୧ ।

ଚତୁରୀ ସଖୀ, କାଞ୍ଚିରୁ ଛଦ୍ମବେଶେ
ବାସୁ, ମା ଜନନୀଙ୍କୁ କୁହନ୍ତି
ବିବାହ ଆଦେଶ ମା ଜନନୀ କରନ୍ତି
ରାଜା କ୍ଷୁବ୍ଧ ହୁଅନ୍ତି । ୨୨ ।
ଅପମାନ ହେଲା ନିଜର, ରାଜ୍ୟର,
ଆଉ ଆରାଧ୍ୟ ଦେବର
ଏ ପରିସ୍ଥିତିରେ ମା ଜନନୀ ଗୋ
ବିବାହ ପ୍ରସ୍ତାବ ନ କର । ୨୩ ।
ପୁନଶ୍ଚ କହିଲେ ତ୍ରେତୟା ଯୁଗେ
ରାମ ଅବତାରେ ଶ୍ରୀରାମ
ରାଜ୍ୟ ସୁଶାସନ ପାଇଁ ଯେ ରଜକ
କଥାରେ ସୀତା ନିର୍ବାସନ । ୨୪ ।
ମିତ୍ର ବାସୁ, ମହା ମନ୍ତ୍ରୀ ଯେ ମିଳି
ଭଲ ଯୋଜନା କଲେ
ଛେରା ପହଁରା ସମୟେ ବରକନ୍ୟା
ପ୍ରଭୁ ଆଜ୍ଞାମାଳେ ବରଣମାଳା ନେଲେ । ୨୫ ।
ଏହା ପ୍ରଭୁଙ୍କର ନିର୍ଦ୍ଦେଶ ଥିଲା
ଯଥା ଶୀଘ୍ର ସଫଳ ହେଲା
ମା ଜନନୀଙ୍କ ଦତ୍ତ ନାମଟି ଯେ
ପଦ୍ମାବତୀ ରହିଲା । ୨୬ ।
ଯୁଦ୍ଧରେ ଜିଣିବା ଫଳ ସରୁପରେ
କାଞ୍ଚି ଗଣେଶ ପୁରୀ ମନ୍ଦିରରେ
ମା ତାରିଣୀଙ୍କ ଇଚ୍ଛା ଘଟ ଗାଁ ବଣରେ
କେନ୍ଦୁଝର ଗଡ଼ ମନା କଲେ । ୨୭ ।
କାଞ୍ଚି ଗଣେଶ ଓ ମା ତାରିଣୀଙ୍କୁ
ସୁମରୁଛି, ମୋତେ ବିଦାୟ ଦିଅ
ସର୍ବେ ଭବନ୍ତୁ ସୁଖିନଃ ଆଶୀର୍ବାଦେ
ବରଦାୟକ ସଭିଙ୍କୁ ହୁଅ । ୨୮ ।



# ବୋଲବମ୍ ଯାତ୍ରା

"ବମ୍ ବମ୍ ବମ୍ ବମ୍ ବମ୍ ଭୋଲେ"
ରାମ ଚରିତ ମାନସ ବୋଲେ ।
ଓଁ ଧିମିକ୍ ଧିମିକ୍ ଧିମ୍ ଧିମିକ୍ ଧିମିକ୍ ଧିମ୍
ନାଚେ ଭୋଳାନାଥ ନାଚେ ଭୋଳାନାଥ
ମୃଦଙ୍ଗ ବୋଲେ ଶିବ ଶିବ ଶିବ ଓଁ
ଡମ୍ବରୁ ବୋଲେ ହରହର ହର ଓଁ
ବୀଣା ବୋଲେ ହରିଓଁ ହରିଓଁ
ବମ୍ ବମ୍ ବମ୍ ...
ଚନ୍ଦନପୁରରେ ବହେ ଭାର୍ଗବୀ ନଦୀ
ପୁଣ୍ୟତୋୟା ସେତ ତୀର୍ଥର ନଦୀ
ସେ ପୁଣ୍ୟ ତୋୟାରେ ପାପିର ସ୍ନାନ
ଆହାକି ସୌଭାଗ୍ୟ ଝୁରେରେ ମନ
ବୋଲ ବୋଲ ବୋଲ ବୋଲରେ ବମ୍ ...
ସାତବୁଡ଼ା ଦେଇ କାନ୍ଧରେ ପାଣି
ସାକ୍ଷୀ ସୂର୍ଯ୍ୟ ଦେବ ପବିତ୍ର, ଏ ପାଣି,
ଗୁଆ, ଗଙ୍ଗାଜଳ ମଧୁ ଆଦି
କୁମ୍ଭରେ ପକାନ୍ତି ପୂଜା ଯେ ବିଧି !
ଶିବ ଲିଙ୍ଗ ସ୍ଥାପି ନଦୀ କୂଳରେ
ପୂଜାର୍ଚ୍ଚନା କରି ସାତ ଘେରା ବୁଲରେ
ଡମ୍ ଡମ୍ ଡମ୍ ଡମ୍ବରୁ ବାଜେ
ପାର୍ବତୀ ପତି ଉମା ସହିତ ବିଜେ ...
କାନ୍ଧରେ ବାହୁଙ୍ଗି ଯାତ୍ରା ଆରମ୍ଭ
ସଭିଙ୍କ ମୁଖରେ ଶ୍ରୀ ଶମ୍ଭୁ ନାମ
ବୋଲ ବମ୍ ହରହର ବମ୍...
ଆମକୁ ଛାଡ଼ି ଦିଅରେ ଆମେ ତ
କାଉଡ଼ି ବାଲା...
ପଥଶ୍ରମ ଗଲା ଦେଖି ଦେବୀବାଟ ମଙ୍ଗଳା

ଆରତି ଦର୍ଶନ ମନେ ବଳ ଯେ ଦେଲା
ବୋଲ ବମ୍ ପାଣି ଧରି ବଡ଼ ଦାଣ୍ଡରେ
କି ସୁଖ ଲଭିଲି ସଖି କହି ନପାରେ...
କିଛି ଦୂର ଯାନ୍ତେ ଦିଶେ ସେ ନୀଳଚକ୍ର
ଆନନ୍ଦାଶ୍ରୁ ବହିଗଲା ସାକ୍ଷୀ ସେ ନୀଳଚକ୍ରେ
ଭକ୍ତି ଆଉ ଭୟରେ ମନଟି ଭରା
ଛୁଇଁ ଦେଲେ କୁମ୍ଭ ଜଳ ଯେ ମାରା
ବମ୍ ବମ୍ ବମ୍ ...
ଶୂନ୍ୟ ଶକ୍ତି କହେ ମନ ତୋ ଦୃଢ଼
ଢାଳିବୁ ତୁ ପାଣି ଏ ରହସ୍ୟ ଗୁଢ଼
ଭୟ ହଜିଯାଏ ବାରେ ମନରୁ ମମ
ଜୟ ଶିବ ପତି ରଖ ଶରଣ
ଦେଖଣା ହାରି ଯେ ହୁଅନ୍ତି ସ୍ତବ୍ଧ
ଆର ପାଳି ଆସିବି ମୁଁ ବାହୁଙ୍କି ଘେନି
ବମ୍ ବମ୍ ବମ୍ ...
ବଡ଼ଦାଣ୍ଡରେ ଯେ ଷଣ୍ଢ ଲଢ଼ନ୍ତି
ଭୋଳାଙ୍କ ବାହାନ କି କୀର୍ତ୍ତନ କରନ୍ତି
ଶହ ଶହ ଭକ୍ତ ନିଦୁ ଉଠି ଧାବନ୍ତି
ପଛକୁ ଫେରିଲେ ଜଳ ଯେ ମାରା
ନ ଫେରିଲେ କିନ୍ତୁ କୁମ୍ଭ ଭାଙ୍ଗିଲା
ଆଶୁତୋଷ ତୁମେ ଅବଢ଼ର ଦାନି
ମୋ ପାଇଁ ନିର୍ଦ୍ଦୟ କିମ୍ପା ହେ ଶୂଳ ପାଣି
ବାଟ ଭାଙ୍ଗି ଚାଲିବାକୁ ମିଳେ ସୁବିଧା
ବିପତ୍ତି ଘୁଞ୍ଚିଲା ନାହିଁ ସେ ବାଧା
ବମ୍ ବମ୍ ବମ୍ ...
ଶ୍ରୀମନ୍ଦିର ଯାଇ ଶ୍ରୀଜୀଉ ଦର୍ଶନ
ଶ୍ରୀ ବେଢ଼ାରେ ବିଶ୍ରାମ ଅତି ମନୋରମ
ଗୋଡ଼ ହାତ ମୋର ନ ଚାଲେ ଏବେ
ଧାଡ଼ିରେ ଅପେକ୍ଷା ଭୋଳା ମନ୍ଦିର ଆଗେ

କଠିନ ବ୍ରତ ମୋ ସହାୟ ହେଲା
ଶ୍ରୀ ଲୋକନାଥ ମଥାରେ ପାଣି ଢଳାଗଲା
ବମ୍ ବମ୍ ବମ୍ ...
ସେହି ଆନନ୍ଦାଶ୍ରୁ ପୁଣି ବୋହିଲା
ଲୀଳା ତୁମ ଯୁଗେ ଯୁଗେ ଥାଉ ପ୍ରଭୁ ଭୋଳା
ଅନୁଭୂତି ଲିପିବଦ୍ଧ ହେବାର ଲକ୍ଷ୍ୟ
କଳିଯୁଗେ ଅଧ୍ୟାତ୍ମ ଯେ ନ ଭୁଲନ୍ତୁ ଲୋକ
ବମ୍ ବମ୍ ବମ୍ ବମ୍ ବମ୍‌ଭୋଲେ
ରାମଚରିତ ମାନସ ବୋଲେ...



# ଅନ୍ତିମ ଭିକ୍ଷା

ମୃତ୍ୟୁ ଆସି ସନ୍ନିକଟ ମୋ ଜୀବ ଦଶାରେ
ଏଣୁ ଗୁହାରି କରୁଛି ଘେନ ପ୍ରଭୁ ବାରେ ।୧ ।

ଅତି କଷ୍ଟେ ଦୀର୍ଘଦିନ ନ ବଞ୍ଚିବି ପ୍ରଭୁ
ମୁଖେ ନ ପଶିବ ତୁମ ନାମ ମହାପ୍ରଭୁ ।୨ ।

ନୟନ ଦେଖିବା ଶକ୍ତି ଅପସରି ଯିବ
ସାମନାରେ ଥାଇ ପ୍ରଭୁ ଦୃଶ୍ୟ ନ ହୋଇବ ।୩ ।

ମରଣ କାଳେ, ପୁରୀରେ ଏ ଜୀବନ ଯିବ
ତୁମ୍ଭ କୃପା ବିନା ଏହା ହେବକି ସମ୍ଭବ ।୪ ।

ମୋ ଜୀବନେ ଯଦି ନ ମିଳିଲା ବାନପ୍ରସ୍ଥ
ଜୀବନ ବ୍ୟର୍ଥ ନୁହେଁ କି ? କୁହ ଜଗନ୍ନାଥ ।୫ ।

ଏହା ହେଉ ତୁମ ପାଖେ ମୋ ଅନ୍ତିମ ଭିକ୍ଷା
ଏ ଅଧମ କନକକୁ ପାରିକର ସଖା ।୬ ।



# ଜଗନ୍ନାଥ ଧାମ ପୁରୀରେ ବାନପ୍ରସ୍ଥ

ଦେଖୁ ଦେଖୁ କାଳିଆ କାଳ ଗଡ଼ିଗଲା
ବାର୍ଦ୍ଧକ୍ୟ ଆସିଲା ଧାଇଁ
ଏହି ଅବସ୍ଥାର ଉପଚାର ପାଇଁ
ତୁଳସୀ ରାମାୟଣ କହି ।୧।

"ଚୌଥେପନ ଯାଇହି
ନୃପ କାନନ ।"
ଏ ପାପୀକି ଦେଇପାରେ
ସେଥିରେ ମନ ? ।୨।

ଯଦି ନ ପାରୁଛୁ ବାର୍ଦ୍ଧକ୍ୟରେ
ତୁହି ଅରଣ୍ୟେ ଯାଇ
ଆଦରିନେ ବାଉଳାରେ ତେବେ
ଶ୍ରୀକ୍ଷେତ୍ର ଭୂଇଁ ।୩।

ବାର୍ଦ୍ଧକ୍ୟର ତୋର ଦୁଃଖ ହଟିବ
ସୁଖ ଫେରିବ
ଏ ଜୀବ ସୁଖ ହିଁ ସୁଖରେ ଚକ୍ର
ତୀର୍ଥେ ଯିବ ।୪।

ସଜନ ପାଖରେ ନଥିଲେ କାଳିଆ
ସାକ୍ଷୀ ରହିବ
ବାସି ମଢ଼ା ପଛେ ହୁଅରେ
ଆତ୍ମା ବୈକୁଣ୍ଠେ ଯିବ ।୫।

ଶବ ତୋର ଯିବ ବଡ଼ଦାଣ୍ଡ
ବଡ଼ ଦେଉଳ ଦେଇ
ଆତ୍ମା ତୋ ଦର୍ଶନ କରିବ
ଆହା ଜଗତ ସାଇଁ ।୬।

ସ୍ୱର୍ଗଦ୍ୱାରରେ ପୋଡ଼ାହେଲେ
ମଢ଼ା ଅଦୃଶ୍ୟେ ହସେ
"ତ୍ରାହି ଜଗନ୍ନାଥ" ଶୂନ୍ୟ ବାଣୀ ପରା
ଆକାଶେ ଭାସେ ।୭।

ଶ୍ରୀକ୍ଷେତ୍ରେ ରହଣି ବୃଦ୍ଧ ଅବସ୍ଥାରେ
ଆହା କି ମଜା
ଗରିବ ଭାଇ ପାଇଁ ଏହା
ନୁହେଁ କି ସଜା ।୮।

ମନଥିଲେ ହାତେ ପଇସା
କଉଡ଼ି ନାହିଁ ।
ମନ ମାରିଦେଇ ମଉନେ ବସିବା
ଆଉ ତ ଉପାୟ ନାହିଁ ।୯।

"ଚୌଥେପନ୍" ଚୌଥେପନ୍
ପୁରୀ, କର୍ଣ୍ଣେ ପଡ଼ିଲେ
ଆଖି ଦେଖାଇ ଧନୀବ୍ୟକ୍ତି
କହଇ ବାରେ ।୧୦।

"ଈଶ୍ୱର ସର୍ବଭୂତମୟ ଅଟଇ"ରେ
ପୁରୀ ଯିବା ତୁ କି କାରଣେ
ଚିନ୍ତା କରୁରେ ? ।୧୧।
ପଞ୍ଚସଖା-ଜଗନ୍ନାଥ, ବଳରାମ,
ଯଶୋବନ୍ତ, ଅନନ୍ତ,
ଅଚ୍ୟୁତ ମିଶିଲେ ପାଞ୍ଚନାମ ହେଲେ
ଏହି ମାଳା ତୁ ଜପତ ।୧୨।
ସେମାନଙ୍କ ହୃଦେ ନ ଥିଲେ କି
ଜଗନ୍ନାଥ ସ୍ୱାମୀ ?
ଶଙ୍ଖତୀର୍ଥେ କିମ୍ବା ଆସି
ଜୀଉଙ୍କ ଚରଣେ
କହନ୍ତି "ତ୍ରାହି ମାଂ ସ୍ୱାମୀ" ।୧୩।
ଭୁଲ୍ ରାସ୍ତାରୁ ତୁ ଫେରିବା ପାଇଁ
ଚେଷ୍ଟିତ ହୁଅ ବାଉଳେ
ଶ୍ରୀଚୈତନ୍ୟ ମହାପ୍ରଭୁ ମହାମନ୍ତ୍ର
କୀର୍ତ୍ତନ କର ବିହ୍ୱଳେ ।୧୪।

ଗଡ଼ିଯିବୁ ବଡ଼ଦାଣ୍ଡରେ
ଉଡ଼ିବ ଶରଧାବାଲି
ମହୋଦଧିରେ ସ୍ନାନ କଲେ
ଝଡୁଥିବ ତୋ ଦେହରୁ
ପବିତ୍ର ବାଲି ।୧୫।
ଏବେ ବି ତୋ ମନରେ
ଯଦି ଥାଏରେ ଦ୍ୱିଧା
ସଂପୂର୍ଣ୍ଣ ପୃଥିବୀକୁ ତୁ
ପରିକ୍ରମା କରିଆ ।୧୬।
କେଉଁଠାରେ ନ ଦେଖିବୁ
ଦାରୁଭୂତ ମୁରାରି, ବ୍ରହ୍ମଧାରୀ
ହଜିବ ଅଜ୍ଞାନ ତୋହର
ହେବୁ ସଦାଚାରୀ ।୧୭।
ବେଶି ଆଉ ଆମ 'ଚୌଥେପନ୍' ପାଇଁ
ମଥା ପ ଘୂରୁ
ପୁରୀ ରହଣିରେ ଶ୍ରୀରଙ୍ଗା ଅଧରୁ
କରୁଣା ଝରୁ ।୧୮।





# ସ୍ୱର୍ଗଦ୍ୱାର

ସ୍ୱର୍ଗଦ୍ୱାର ମହାତ୍ମାହେ
କୋଟି ନମସ୍କାର
ତୁମକୁ ନିକଟେ ଚାହେଁ
ତୁମେ କର ଦୂର ।୧।
ଦିନେତ ଜୀବନ ଯିବ
ଏହା ସତ୍ୟ ଅଟେ
ତୁମ ବକ୍ଷେ ଜଳା ହେଲେ
ସ୍ୱର୍ଗଦ୍ୱାର ଫିଟେ ।୨।
ଆକୁଳ କ୍ରନ୍ଦନ ମୋର
ଶୁଣ ଦେଇ କର୍ଣ୍ଣ
ଅନ୍ୟତ୍ର ଜୀବନ ଗଲେ
ଧିକ ଏ ଜୀବନ ।୩।
ଚତୁର୍ଦିଗ ଅନ୍ଧକାର
ଦିଶଇ ଯେ ମୋତେ
ସ୍ୱର୍ଗଦ୍ୱାର ମହାତ୍ମାହେ
ସତେ ନେବ ସାଥେ ।୪।
ପୂର୍ବ ବନ୍ଧୁମାନେ କେତେ
ପୁଣ୍ୟ କରିଥିଲେ
ତୁମ ବକ୍ଷେ ସ୍ଥାନ ପାଇ
ସ୍ୱର୍ଗପୁର ଗଲେ ।୫।
ସେମାନଙ୍କ ଶ୍ରୀଚରଣେ
ନିବେଦନ ମୋର
କନିଷ୍ଠ ବନ୍ଧୁଙ୍କୁ ଡାକି
ନେବାରେ ନ ଭୁଲ ।୬।
ବିଦିତ ଅଛି ବିଦେଶୁ
ଶବ ଚାଲିଆସେ
ପାଖର ମୃତ୍ୟୁର କିନ୍ତୁ
ଶବ ପୋଡ଼ା ପାଶେ ।୭।
ଭାବକୁ ନିକଟ ତୁମେ
ଅଭାବକୁ ଦୂର
ଏହି ମତେ ଏହି ଲୀଳା
ନୁହେଁ କି ବିଚାର ।୮।
ରାମ ନାମ ସତ୍ୟ ଡାକେ
ତୋ ଦ୍ୱାର ପବିତ୍ର
ସତେ କି ମିଳିବ ମୋତେ
ଆହେ ସ୍ୱର୍ଗ ମିତ୍ର ।୯।
ଭାଗ୍ୟ ଥିଲେ ମୋର ଅସ୍ଥି
ସମୁଦ୍ରେ ବିସର୍ଜନ
ଅନ୍ୟ ସ୍ଥାନେ ନହେଲେ
ନ ହେଉ ବିସର୍ଜନ ।୧୦।
ତ୍ରିବେଣୀ ବକ୍ଷେ ବିସର୍ଜନ
କହନ୍ତି ପବିତ୍ର
ମହୋଦଧି ବିସର୍ଜନ
ନୁହେଁ ଅପବିତ୍ର ।୧୧।
ଏଗାର ଦିନ କ୍ରିୟା
କିବା ପ୍ରୟୋଜନ
ସ୍ୱର୍ଗଦ୍ୱାରେ ସ୍ୱର୍ଗପ୍ରାପ୍ତି
ଏହା ଶ୍ରେୟ ଜାଣ ।୧୨।
ମୁରୁଖ ମାନବ ଆମେ
ତା ନ ଜାଣି ପାରି
କ୍ରିୟା କ୍ରିୟା ରଡ଼ୁଥାଉ
ହୋଇ ଦୁଃଖେ ବାଉଳି ।୧୩।
ମୋ ଇଚ୍ଛା ମୁଁ କହୁଅଛି
ଶୁଣନ୍ତୁ ସମସ୍ତେ
ଦୋଷ ଥିଲେ କ୍ଷମା ଦେବେ
କହେ ନତମସ୍ତେ ।୧୪।
ସ୍ୱର୍ଗଦ୍ୱାରେ ଦାହ ହେଲେ
ସଂକ୍ଷିପ୍ତ କିୟା ହେବ
ରାମ ଧୁନ୍‌ରେ ମେଦିନି
କମ୍ପମାନ ହେବ ।୧୫।
ବାରଦିନେ ବଂଧୁ ସାଥୀ
ଆମନ୍ତ୍ରଣ କରି
ମହା ପ୍ରସାଦ ଭୋଜନେ
ସଭିଙ୍କୁ ତୃପ୍ତ କରି ।୧୬।
ମେଲାଣି ନେଉଛି ପ୍ରଭୁ
ଦୁଃଖ କହି ମୋର
ସ୍ୱର୍ଗଦ୍ୱାର ସାମୀ ନ ଭୁଲିବ
ମୁଁ ତୁମ କିଙ୍କର ।୧୭।

# କାଳିଆ ! ମୋ ମା ?

ମୋ ଜୀବନେ ଥାଏ ଏକ ମହାଶୋକ
ମା'କୁ ମୁଁ ଦେଖିନାହିଁ ।
କ୍ଷୀର ମୁଁ ପିଇଛି ଦେଢ଼ବର୍ଷ ଯାଏଁ
ସେଥିରେ କି ରୂପ ଥାଇ ।୧।
କର୍କଶ ଆଉ ମୋ ପଥର ଜୀବନେ
କେତେ ଦୁଃଖ ଅଛି ସହି
ଏହା ମନେହେଲେ କୋହ ସରେ ନାହିଁ
ମିଛ କହୁନାହିଁ ମୁହିଁ ।୨।
ମାତୃହରା ଅଛନ୍ତି କୋଟି କୋଟି ଜନ
ସଭିଙ୍କୁ ପଚାରେ ତୁହି
ମନେ ପକାଇଲେ କୋହ ତୁ ଶୁଣିବୁ
ଏଥିରେ ସନ୍ଦେହ ନାହିଁ ।୩।
ମା' ମା' କହି କାନ୍ଦି ଦିଏ ମୁହିଁ
ମନ ମୋ ସନ୍ତୋଷ ପାଇଁ
କାନ୍ଦୁଥିଲା ବେଳେ କେ ଲୁହ ପୋଛିବ
ମା' ପୋଛା ନିଆରା ହୋଇ ।୪।
କୋଳରେ କୋଳାଇ ଛାତିରେ ପକାଇ
ଲୁହ ଯେ ମାଆ ପୋଛଇ
ସବୁ ସୁଖ ଶାନ୍ତି ଉଜାଡ଼ି ଦେଲୁରେ
'ମା ଖାଇ' ନାମ ଦେଇ ।୫।
ମା' ନେଇ ଗଲୁତୁ, ବଡ଼ ଜୀବଟିଏ
ସାନକୁ ପାରିନୁ ନେଇ
ଏହି କଥା ମୋତେ ବିସ୍ମୟ କରେରେ
ଦଗାଦିଆ ନୀତି ପାଇଁ ।୬।
ଯାହା ଭୁଲ୍ କରୁ ସଂଶୋଧନ ନାହିଁ
ଧନ୍ୟ ତୋ ଚପଳ ମତି
ତୋର ପରା ଥିଲେ ଦୁଇଜଣ ମା'
ପୁଣି ପୁତନା କ୍ଷୀରରେ ମତି ।୭।
ଶିକ୍ଷା ଗୁଡ଼ା ତୋର ସବୁ ଅସମ୍ପୂର୍ଣ୍ଣ
ଛାଡ଼େ ଏ ଅଜବ ପ୍ରୀତି
ଭୁଲ୍ ମାଗେ ତୁହି ମା ଲକ୍ଷ୍ମୀଙ୍କ ଆଗରେ
ଗଢ଼ି ଉଠୁ ମାତୃ ଶକ୍ତି ।୮।
ମୋ ମା'ଙ୍କ ପତିଭକ୍ତି ଅତୁଳନୀୟ
ଚାଳିଶ ବର୍ଷ ଅନ୍ତରେ
ନିଜ ମୃତ୍ୟୁ ଦିବସେ ପତିଙ୍କୁ ନେଲେ
ଛ' ପିଲାଙ୍କ ଜଞ୍ଜାଳ ପରେ ।୯।
ଶୈଶବା-ବସ୍ଥାରେ ଏକଦିନ ଥରେ
ମୋ ମୃତ୍ୟୁର ଲକ୍ଷଣ ଆସେ
କପଡ଼ା ଘୋଡ଼ାଇ ଘୋର ମନ ଦୁଃଖେ
(ମା) ନିଦେ ଶୋଇ ପଡ଼ନ୍ତି ସେ ।୧୦।
ବିଛା ଏକ ଆସି ଦଂଶନ କରନ୍ତେ
ନିଦ୍ରା ନିଜର ଭାଙ୍ଗିଲା
ଓଲଟି ନିଜର ଶିଶୁକୁ ଚାହାନ୍ତେ
ଜୁଳୁ ଜୁଳୁ ଚାହୁଁଥିଲା ।୧୧।
ଏହି ବିଷୟଟି ମୋ ବଡ଼ ଭଉଣୀ
ମୋତେ କହି ଥରେ ଥରେ
ସେ ବି କାନ୍ଦନ୍ତି ମୁଁ ବି କାନ୍ଦେ ଦୁଃଖରେ
ହୃଦୟର ଆବେଗରେ ।୧୨।
ସେଇ ପିଲା ମୁହିଁ ଚିକିତ୍ସା ବିଦ୍ୟାରେ
ଏମ୍.ବି.ବି.ଏସ୍; ଏମ୍.ଡି. କରଇ
ସରକାରୀ ମେଡିକାଲ କଲେଜରୁ
ପ୍ରଫେସର ପଦେ ଅବସର ନେଇ ।୧୩।
ମୋ ପିତା, ଦାଦା, ଖୁଡ଼ୀ ଆଦିଙ୍କ ଆତ୍ମା
ସ୍ୱର୍ଗରେ ଶାନ୍ତିରେ ଥାଉ
ଏହିମାନେ ଯେ ମୋର ପାଳନ କର୍ତ୍ତା
ପ୍ରଭୁଙ୍କୁ ବିଦିତ ହେଉ ।୧୪।

# ଶ୍ରୀ ଜଗନ୍ନାଥ ସ୍ତୁତି

ଜୟ ଜୟ ଜଗନ୍ନାଥ, ଅନନ୍ତ, ଅନାଦି
"ନେତି ନେତି" କହି ବେଦ ବର୍ଣ୍ଣନ କରନ୍ତି ।୧।
ଅଧର୍ମ ଫଳ ଯଦି ନ ମିଳିବ ତତ୍‌କାଳ
ମିଳିବ ନିଶ୍ଚିତ ଦିନେ ଏହା ବାଣୀ ସାର ।୨।
ପର ଅବଗୁଣ ପରା ଦେଖିବାର ନାହିଁ
ଏପରି ସଦ୍‌ବୁଦ୍ଧି କିମ୍ପା ନ ଦିଅହେ ସାଇଁ ।୩।
ବ୍ୟସ୍ତ ମନୁଷ୍ୟ କ୍ରନ୍ଦନେ ସମୟ ନ ପାଏ
ତୁମ ଚରଣ ସେବାରେ ସଂସାର ନ ଥାଏ ।୪।
ଗ୍ରନ୍ଥ ରହିତ ଘର ଆତ୍ମା ରହିତ ଶରୀର
ଭକ୍ତିହିନ ମନ ଜାଣ ଶବ ପରକାର ।୫।
ଅଧିକ ଅଧିକାରରେ ବିଚାର ଦୂଷିତ
ଅଧିକ ପୂଜାର୍ଚ୍ଚନାରେ ମତି ନୁହେଁ ଭ୍ରଷ୍ଟ ।୬।
ଶିକ୍ଷା ଦିଅ ପ୍ରଭୁ ଗରୀବ ପୂଣ୍ୟର ଫଳ
ଧନବାନ୍ ପାପୀର ବି ହୋଇପାରେ ଫଳ ।୭।
ଏଥିରେ ବିଶ୍ୱାସ ପାଇଁ ଦିଅ ଜ୍ଞାନ ବଳ
ପ୍ରଭୁ, ପବିତ୍ରମୟ ହୋଇ ଯିବ ସଂସାର ।୮।
ଶତ୍ରୁ ଗୁଣ ନିଅ ଜନେ ଅବଗୁଣ ନ ନିଅ
ଜଗତ କର୍ତ୍ତାଙ୍କ ଏହି ବାଣୀ କମନୀୟ ।୯।
ଉଦ୍ଦେଶ୍ୟ ଶୁଭ ନ ହେଲେ ଜ୍ଞାନ ପାପ ହୁଏ
ଜ୍ଞାନ ଭଳି ମହାଶକ୍ତି କାଳିଆ ହିଁ ଦିଏ ।୧୦।
ଭକ୍ତର ଚରିତ୍ର ପାଇଁ ପ୍ରଭାବ ଜ୍ଞାନର
ଏହି ମହିମାଟି ପ୍ରଭୁ ଝରୁ ନିରନ୍ତର ।୧୧।
ମନୁଷ୍ୟର ତୃପ୍ତି ଧନରେ ନାହିଁ ଯଦି
ବୃଥାରେ ନ ଭ୍ରମାଅ ହେ କରୁଣା ବାରିଧି ।୧୨।
ମନେ କିଛି ପ୍ରଶ୍ନବାଚି ଉଙ୍କି ମାରୁଥିଲା
ତୁମ୍ଭଙ୍କୁ ଜଣାଇ ପ୍ରଭୁ ଆଶ୍ୱସ୍ତି ମିଳିଲା ।୧୩।



